

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

# ମାଟିର ମଣିଷ

# ମାଟିର ମଣିଷ

ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ

ଓଡ଼ିଆ ଗଦ୍ୟରେ

"ବିଶ୍ୱକଳ୍ପନା ଓ ଆତ୍ମଦର୍ଶନ" ନାମକ

ସୁବୃହତ୍ ଅପ୍ରକାଶିତ ଦର୍ଶନ ଗ୍ରନ୍ଥର ରଚୟିତା

ମୋହର ପରଲୋକଗତ ପିତୃଦେବ

**ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କର**

ମହନୀୟ ସ୍ମୃତି ଉଦ୍ଦେଶ୍ୟରେ

ଉତ୍ସୃଷ୍ଟ

# ଷୋଳବର୍ଷ ପରେ

ଷୋଳବର୍ଷ ଆଗେ 'ମାଟିର ମଣିଷ' ଲେଖା ହୋଇ ଛପା ହୋଇଥିଲା । ବରଜୁ ପ୍ରଧାନ ନିଜ ଘର ଗ୍ରାମ ହରିପୁର ଷୌରାଙ୍ଗ ଟେଶଣ ଘରେ ଆସି ରହିଲା । ତହିଁ ଭିତ୍ତିରୁ ତାହା ଜୀବନରେ ଆଉ କି କି ଘଟଣା ଘଟିଲା ସେ କଥା ଜାଣିବାକୁ ଷୋଳ ବର୍ଷ ଆଗେ ଯେହିଁ ପ୍ରିୟ ପାଠକମାନଙ୍କର ଆଗ୍ରହ ହୋଇଥିଲା, ତାହା ଆଜ ସନ୍ଧିକ ମଜଳ ଯାଇଥିବ । ତେବେ ଏହି ଷୋଳବର୍ଷଯାକ 'ମାଟିର ମଣିଷ' ଯେ ଜୀଇ ରହିଛି, ସେହି କାରଣରୁ ପୁଣି ମାଟିର ମଣିଷ 'ଲୁହାର ମଣିଷ'ରେ ବଦଳିଯିବା କଥାଟା ଆଗରୁ କେତେକ ବନ୍ଧୁ ଜାଣି ପାରିଥିବାରୁ ଲେଖକର ମଧ୍ୟ ଲୁହାର ମଣିଷ ଲେଖିବା ଲୋଡ଼ା ହେଲା । ଏହି ଲମ୍ବା ଷୋଳ ବର୍ଷ ଭିତରେ ଲେଖକ ମାଟିରୁ କେତେ ଲୁହା ଚାହାରିବାର ଦେଖିଛି; କେତେ ଲୁହା ପୁଣି ମାଟିରେ ମିଶିଯାଇ ଅଦ୍ଭୁତ ତହିଁରୁ ଲୁହା ବାହାରୁଛି । ମାଟି ଆଉ ଲୁହାର ଏହି ଅଦଳବଦଳ ଭିତରେ ଆଜ 'ଲୁହାର ମଣିଷ' ଛୁଡ଼ା ହୋଇଛି ।

କଟକ
୧୦-୫-୫୭ — ଲେଖକ

ଏ ସଂସ୍କରଣ ପାଇଁ ପ୍ରସିଦ୍ଧ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର କାନୁନଗୋ ଲୁହାର ମଣିଷର ଚିତ୍ରଗୁଡ଼ିକ ଆଙ୍କିଦେଇ ଅନୁଗୃହୀତ କରିଛନ୍ତି ।

—ପ୍ରକାଶକ

ଛକଡ଼ିର ଲୁହ ଦେଖି ବରଜୁ ମନଟା ବି ତରଳି ଗଲା । ତିରିଶ ବର୍ଷ ଆଗେ ତାକୁ ଯେତେବେଳେ ମାତ୍ର ବାରବର୍ଷ, ସେତେବେଳେ ବି ସାତବର୍ଷର ଛକଡ଼ିକୁ ଯେମିତି ପାଖରେ ବସାଇ ସେ କଥା ଗପୁଥିଲା, ଆଜି ସେମିତି ବସାଇ କହିଲା, "ତୁ କଣ ଭାବୁଚୁ ମୁଁ ମାନ ଅଭିମାନରେ ଘର ଛାଡ଼ି ଚାଲି ଆସିଲି ? ମାନ ଅଭିମାନ କାହାକୁ କରିବି—କିଏ ?" ବରଜୁ ଓଠର ଗୋଟାଏ ପାଖ ଟିକିଏ ମେଲା ହୋଇ ମୁରୁକି ହସା ଦେଖାଇଲା । ତାହା ଛକଡ଼ିର ପିଲାଦିନରୁ ଜଣା ହସ ।

ଏତେ ମୁହାଁ ମୁହିଁ ହୋଇ ଭାଇ ଆଗରେ ବସିବାକୁ ଛକଡ଼ିକୁ ଅଡୁଆ ଲାଗୁଥାଏ । ସେ ମୁହଁ ତଳକୁ କରି ଦେଲା । ଅଜାଣତରେ ନିଜ ଲମ୍ବାହାତଟାକୁ ଛକଡ଼ି କାନ୍ଧରେ ଥୋଇ ବରଜୁ ତାହାର ବଡ଼ ବଡ଼ ଡୋଳା ଦି'ଟାରେ ସାନ ଭାଇର ମୁହଁକୁ ଚାହିଁଲା, "ତୁ ସିନା ମୋ ପାଖେ ମାନ ଅଭିମାନ କରିବୁ, ମୁଁ ତୋ'ଠାରେ କରିବି କିମିତି ?"

ବରଜୁର ଉଜଣିଆ ହାତଟାରେ ଛକଡ଼ କାନ୍ଧରୁ ଯେମିତ ଗୃଞ୍ଜି ମହଣର ଗୋଟାଏ ସ୍ୱର ଉହ୍ଲାଇଗଲା । ତେବେ ସ୍ୱଇ ନ ଥାଇ ନିଜ ଘର କଥା ମନେ ପଡ଼ି ସବୁଆଡ଼ ତାକୁ ଖାଲି ଖାଲି ଲାଗୁଥାଏ । ଘର ଗୋଠାକରେ ଏକା କେଉଁମଣି, ଆଉ ଛକଡ଼ ! ଘୁଡିଟା ତାହାର ଧଡ଼ି ଜନ ପଡ଼ିଲା । ସେ ମୁହଁ ଟେକ ବୋକା ଭଳି ପୁଚ୍ଛିଲା, "ତୁମେ ଫେରି ନ ଗଲେ ମୁଁ ସେ ଘରେ ତ ଏକାଟିଆ ରହି ପାରିବ ନାହିଁ ।"

ଛକଡ଼ କାନ୍ଧ ଉପରେ ମୁଠାକୁ ଟିକିଏ ଟାଣି କରି ବରଜୁ ତାକୁ ବୋହଲାଇ ଦେଲା, "ରହି ପାରିବୁ ନି ? କାହିଁକି ରହି ପାରିବୁ ନି ? ହଁ ତତେ ସେଇ ଘରେ ରହିବାକୁ ହବ । ଝାଡ଼-ଦଗିଲ୍ଲ, ଗୋବୁଗାଣ୍ଡି, ଝୁଷବାସ ସବୁ ଦେଖିବାକୁ ପଡ଼ିବ ।"

ପର ଛୁଟି ପାଇଥିବା ଚଢ଼େଇ ପରି ଛକଡ଼ିକୁ କହିଁ ଦେଲେ ବୁଦ୍ଧି ବାଟ ଦିଶୁ ନ ଥାଏ । ତା ମୁହଁରୁ ବାହାରି ଆସିଲା, "ନାହିଁ, ତମେ ସ୍ୱଲ ।"

"ପୁଣି ସେଇ କଥା କହୁଛୁ ! ଆଉ ଜଣ ପାଞ୍ଚବର୍ଷିଆ ପିଲା ହେଇଚୁକି, ନିଜେ କିଛି ବୁଝ୍ବୁନି, ଦେଖିବୁ ନି ? ମତେ ଘରୁ କିଏ ତଡ଼ି ଦେଇଚି—ନା ଫେରି ଯିବାକୁ କିଏ ମନା କରିବ ? ମୋ ଇଚ୍ଛା, ତୁ ଏକା ଚଳିବାକୁ ଶିଖ୍ । ଭଲ ଜଣ, ମନ୍ଦ ଜଣ, ଗାଁ ଭିତରେ ଭିଏ କି ଭଳି ମଣିଷ—ନିଜେ ଚିହ୍ନ୍, ନିଜ କଥା ନିଜେ ବୁଝ୍ । ମୋ ଖୁସିରେ ମୁଁ ଆସିଚି, ଯେତେବେଳେ ଇଚ୍ଛା ଫେରିଯିବି । ମତେ ତ କେହି ଖେଦିବ ନାହିଁ !"

ଗୌରାଙ୍ଗ ଘର ଭିତରକୁ ପଶି ଆସି କହିଲା, "ତମ ଘରକୁ ତମେ ଯିବ, ଖେଦିବ କିଏ କାହିଁକି ?"

ବଉଜନ୍ ତାଙ୍କୁ ବୁଝିଁ କହିଲା, "ଛକଡ଼ି ସେ କଥା ବୁଝି ପାରୁ ନାହିଁ ।" ଗୌରାଙ୍ଗଙ୍କୁ ଦେଖି ଛକଡ଼ିର ଟିକିଏ ଦମ୍ଭ ଆସିଲା, "ଆଜଯାକେ ମୁଁ କେଉଁ କଥା ବୁଝୁଥିଲି ଯେ—"

"ବୁଝୁ ନ ଥିଲେ ଏଣିକି ବୁଝିବୁ । ଖାଇ ଯାହା କରୁଛ, ସେଇଟା କର" ଗୌରାଙ୍ଗ କହିଲେ । ଛକଡ଼ି ପଚାରିଲା, "ଆଜି କଣ ପିଲାମାନେ ବି ଯିବେ ନାହିଁ ?" ଗୌରାଙ୍ଗ ଜବାବ ଦେଲେ, "ଆରେ ହଁ, ନ ଯିବେ କାହିଁକି ? ମୋ ଘର କଣ ତୁମ ଘର ନୁହଁ, ନା ପଧାନପଡ଼ା ହରିପୁରଠାରୁ ପାଞ୍ଚ ଦଶ କୋଶ ବାଟ ହେଉଛି ?"

"ତେବେ ଗୋଟାଏ କଥା,—" ବଉଜନ୍ର ସ୍ୱର ଯେମିତି ଛକଡ଼ି ଗୌରାଙ୍ଗ ଦୁହିଁଙ୍କର କାନ ଧରି ଓଟାରିଲା—"ଗୋଟାଏ କଥା କଣ କି, ମୁଁ ହୁଏଁ ପିଲାଏ ହୁଅନ୍ତୁ, ଏବେଠୁଣି ଘରୁ ଟିକିଏ ଅଲଗା ରହିବା ଦରକାର । ବୋ'ଯାଆଙ୍କ ଭିତରେ ପଡ଼ି ପଡ଼ି ଯେଉଁ କଜିଆ ଲାଗୁଥିଲା, ଅଲଗା ରହିଲେ ସେତକ ହେଲେ ବନ୍ଦ ହବ । ଅକାରଣ କଜିଆରେ ଯାହା ହେଉ ଯାଉଥିଲା, ତା' ଭିତରେ ଯେଝା ଚଳାଚଳ ପାଇଁ କାମ କଲେ ତ ଦୁହିଁଙ୍କର ଲାଭ । ଏକାଠି ରହିବା ବୋଲି ତୁଣ୍ଡାଟାରେ ଅଶାନ୍ତିଗୁଡ଼ାଏ ମୂଣ୍ଡାଇବା କାହିଁକି ? ମାଇପଙ୍କ ଭିତରୁ କଜିଆ ବାହାରି ଡିଆଁ ଡେଗ ଭଳି ଶେଷରେ ଆମକୁ ବି ଧରୁଛି । କଜିଆ, କଜିଆ, ଘର ଭିତରେ ଗୋଡ଼ ଦେଲେ ଖାଲି କଜିଆ । ମଣିଷର ଆଉ ଯେମିତି କିଛି ହେଲେ କାମ ନାହିଁ ! ନାହିଁ ଛକଡ଼ି, ତୁ ଏଇକ୍ଷଣି ଘରକୁ ଫେରିବା କଥା କହ ନା ।"

ଛକଡ଼ିର ମୁହଁ ଶୁଖି ଯିବା ଦେଖି ତାହା ପିଠିରେ ହାତ ବୁଲାଇ ବଉଜନ୍ ପୁଣି କହିଲା, "ତୁ କିଛି ହେଲେ ଚିନ୍ତା କର ନା ରେ, ସେଇ

ଘରେ ତ ଆମେ ସମସ୍ତେ ହନେ ଏକାଠି ରହୁଥାଉଁ । ସେଇ ଜମି ବାଡ଼ରୁ ତ ଆମର ବାହା, ପୁନେଇ, ଖଜଣା, ଟିକସ ଜୁଟୁଥିଲା । ସେଥିପାଇଁ ବାପା ତ କାହାରି ଦୁଆରେ ହାତ ପତେଇ ନାହାନ୍ତି । ତୋ ପାଇଁ ଚିନ୍ତା କରୁଚୁ କାହିଁକି ?”

× × × × ×

ସତକୁ ସତ ଛକଡ଼ି ସେ କଥା ମୋଟେ ଚିନ୍ତା କରୁ ନ ଥିଲା । ଖାଲି ନିଜେ ଏକା ରହିବାକୁ ତାର ଗୁପ୍ତ ଇଚ୍ଛାଟା ଚହିଁକି ପଡ଼ୁଥିଲା । ଫେରି ଯାଇ ଯୁଆଡ଼େ ଚାହିଁବ ସବୁଆଡ଼ ତ ଖାଇ ଗୋଡ଼େଇଛି । ତେବେ ବରଜୁ ମୁହଁକୁ ସେ ଚାହିଁଦେଲା କେଳେ ସବୁ ଭୟ ତାର କୁଆଡ଼େ ପାଣି ଫାଟି ଯାଉଥିବ । ବରଜୁର ଆଖି ଯୋଡ଼ାକରେ ଛକଡ଼ି ଦେଖୁଥିଲା ନିଜର ସାହସ, ତାର ଲୁହା ଦେଳ ପରି ବାହା ଦୁଇଟାରେ ଦେଖୁଥିଲା ନିଜର ଦମ୍ଭ, ହାଣ୍ଡି ଜାନ ପରି ଛାତିର ଚୌଡ଼ା ଗୁଣ୍ଡଟାରେ ଦେଖୁଥିଲା ନିଜର ଆଶ୍ରୟ ।

ଦାଣ୍ଡ ଆମ୍ବଗଛଟାରେ ଗୋଟାଏ ହନୁ ବସି ଅକାରଣ ଖେଁକ୍, ଖେଁକ୍ ଖେଁକୁ ଥାଏ । କାର୍ତ୍ତିକ ଶେଷର ହେମାଳ ପବନ ଗଛଟାକୁ ଏ ପଟ ସେ ପଟ ହୋହଲାଇ ଦେଉଛି । ଖରା ଟାଣ ହୋଇ ଆସିଲାଣି । ଦାଣ୍ଡ ମଝିରେ ଗୋରୁ ପଲ ଗୋଠକୁ ଯାଉଛନ୍ତି । ଦୁଇ ଭାଇ ଭୁଙ୍ଗ ହୋଇ କିଛି ସମୟ ବସିଲେ ।

ଗୌରାଙ୍ଗ ଡାକିଲା, “ଆଣିବଟି ଭାଉଜ, ତେଲ ଟିକିଏ ।” ପରେ ବରଜକୁ ଚାହିଁ କହିଲା, “କାଲି ଗଡ଼ିଆରେ ଏପଟେ ଖିଅ ଧରିବ ଭଲ । ତମକୁ ତ ମାଛ ନ ହେଲେ ଚଳିବ ନାହିଁ । ତିନି ବର୍ଷ ତଳେ ଗଡ଼ିଆଟାରେ ରୋହି ଯାଆଁଳ ଛାଡ଼ିଥେଲ ଯେ, ଆଜଯାକେ

ଗୋଟାଏ ହେଲେ ମସ ହୋଇ ନ । ଛକଡ଼ି, ତୁ ଲୁଗା ପାଲଟି ଗାମୁଛ ଖଣ୍ଡେ ପିନ୍ଧ—ଯିବା ।"

"ମୁଁ ଏଉନ ଏଠି ରହିବ କାର୍ତ୍ତିକ ?" ଛକଡ଼ି ପଚାରିଲା ।

ହାସ୍ୟବୋଳ ଆସି ତେଲ କାଞ୍ଚୁଲିଟାଏ ଥୋଇ ଦେଇ କହିଲା, "ହଁ, ଏଇଠି ରହିବ । ଏତିକ ଖଣ୍ଡରେ ଶୀଏ ଯାଏ, ନା ତୁମେ ଯିବ ? ଘୁଷ ନେଉଛ, ତେବେ ପାଣି ବାହାରିବ ।"

ଛକଡ଼ି ସଭୁକ କଥାରୁ ଏତ ପାରିଲା ନାହିଁ । ଖାଲି ମୁରୁକ ହସି କହିଲା, "କାର୍ତ୍ତିକ, ଆମ ଗାଁ କେତେ ବାଟ ଜ ?"

"ସେତେ ବାଟ ହଉ, ଗୁଡ଼ପର ଜଣେ ପିମ୍ପୁଡ଼ି ଖାଇ ଯାଇଛ ଜ ?"

ନେତମଣିଠାରୁ ଏହି ସଭୁକ ବିଷୟରେ ଛକଡ଼ି କେତେ କଥା ଶୁଣି କେତେ ଥର ତାକୁ ମୁହଁ ଉପରେ ଦୁଷିଛୁ । ତେବେ ନେତମଣି ଆସିଥିବା ଆସୁଛୁ ସଭୁକ ତାହାର ମନଭିତରେ ଯେଉଁ ଥାନଟିକ ମାଡ଼ି ବସିଥିଲା, ସେଠାରୁ ତାକୁ ସେ ତଡ଼ିଦେଇ ପାରି ନାହିଁ ।

ତେଲ ଲଗାଇ ସାରି ଗୌରଙ୍ଗ କହିଲା, "ମୁଁ ଛଦଆ ମାମୁଙ୍କୁ ଡାକ ଆଣେଁ. ତମ ସାଥିରେ ମାଛ ଧରିବ ।"

"ଛଦଆ ମାମୁଁ !" ବଡ଼କୁ ଦୁଆର ମୁହଁକୁ ଯିବା କହିଲା, —"କେଇ ଚଗ ଛଦଆ ମାମୁଁ ଗୋଡ଼ାଇ ଯାଉ ।"

ଗୌରଙ୍ଗ କହିଲା, ଆରେ ତୋର କେତେ ସୁଦ୍ଧା ପରମାୟୁ ମ ! ନେ, ତେଲଟିକେ ମାଖି ହଉ !"

ଦୁଆର ବନ୍ଧରେ ଭସ ଦେଇ ଛିଡ଼ା ହୋଇଥିବା ଛଦଆ ମାମୁଁର କଳା ମଚମଚ ଚେହେରା ଆଡ଼କୁ ଛକଡ଼ି ଚାହିଁଲେ ।

ତାହାର ଆଖି ଯୋଡ଼ିକ ନାକ ଉପରକୁ ଉଠି ଆସି ନାକଟା ଭିତରକୁ ପଶି ଯାଇଛି । ଗୁମ୍ ଦାନ୍ତ ତଳ ଉପର ବୁଢ଼ାଟା ଲେଖାଏଁ ଭାଙ୍ଗିଯାଇ ଫାଙ୍କ ଦାନ୍ତଗୁଡ଼ାକ ହଲୁଛନ୍ତି । ମୁହଁଟାର ପ୍ରକାର ଏପରି ହୋଇଛି ଯେ, ସେ ତାଙ୍କୁ ଯେତେ ଶୁଖାଇବାକୁ ଗଲେ ଯେ କେହି ବୁଝିଲେ ହସିବ । କାରଣ ତାହାର ଚୋଲା ଯୋଡ଼ାକରେ ସବୁବେଳେ ଯେମିତି କ କୌତୁକ ଖେଳି ବୁଲୁଛି । ସତକୁ ହତ ହରିପୁର ଗାଁଟାର ଡେନ ହଜାର ବସ୍ତି ଭିତରେ ପଦନ ସାହୁ କୌତୁକିଆ କଥା କହିବାରେ ଜଣେ ମସ୍ତ ନାମଜାଦା ଲୋକ । ରୋଜ ସକାଳେ ମୁଢ଼ି ଟୋକେଇ ମୁଣ୍ଡରେ ଥୋଇ ବାଣ୍ଡ ମଝିରେ ସେ ଡାକ ଯାଏ, 'ଚଟକା ମୁଢ଼ି, ଗରମ ମୁଢ଼ି, ଦାନ୍ତ ଗଜୁରିବ ଖାଇଲେ ବୁଢ଼ି;' ପୁଣି 'ମୁଢ଼ି ମୁଢ଼ି' କହିଲେ ଖୁଡ଼ୁ, ଦାନ୍ତ କଣି ଦେବେ ଦକ୍ଷିଣୀ ଚୂଡ଼, ଅସା ମୋ ମୁଢ଼ି ଭଜା, ଖାଇଲେ ମଜା ।' ଶଳକୁ ଧନ ଭଲ କ ଭଲ ଡାକ ।

ପିଲାଠାରୁ ବୁଢ଼ା ଯାକେ ସମସ୍ତଙ୍କ ସେ ପଦଆ-ମାମୁ । ଏଇ ମାମୁଁ ପଦଟା ବି ଏକ କୌତୁକିଆ ଘଟଣାରୁ ତାଙ୍କୁ ମିଳିଛି । ଥରେ କୁଆଡ଼େ ଥାନା ମୁନସି ବାବୁ କଣ ଗୋଟାଏ ମକଦ୍ଦମା ସରଜମିନ ତଦନ୍ତରେ ଆସିଥାନ୍ତି । ତାଙ୍କ କଥା ଉପରେ ପଦଆ ଟିକିଏ କେଆଡ଼ା କରି କହି ଦେବାରୁ ମୁନସି ବାବୁ ଚିଡ଼ିଯାଇ ତାଙ୍କୁ ଧମକେଇଥିଲେ. "ଚୁପ୍ ରହ ଶଳା !" ତଦନ୍ତବେଳେ ଯେତେ ଲୋକ ଜମା ହୋଇଥିଲେ, ମୁନସି ବାବୁଙ୍କ ତେଜ ଦେଖି ସମସ୍ତେ ଶଙ୍କିଗଲେ । ପଦଆ କୁଆଡ଼େ ଅତି ସହଜରେ ଜବାବ ଦେଇଥିଲା, "ହଜୁର ଆଜ୍ଞା, ଚୁପ୍ ରହୁଛି । କେବେ କଥା କହିବାରୁ ସିନା ହଜୁରଙ୍କ ପୁଅଙ୍କ ମାମୁଁ ହୋଇ ପାରିଲି ।" ସେବେଠୁଁ ଚଟକା ହୋଇ ରହିଛନ୍ତି ବାବୁଙ୍କ ଘର ଆଖିଆ କେତେ ଉପରକୁ ଚଢ଼ି ଏଥର

ପଢ଼ଆ ଭଡ଼ରରେ ଛୁଟିବ କେଜାଣି ! ତେବେ ମୁଣ୍ଡରେ ମୁଡ଼ି ବୋଝ, କାନ୍ଧରେ ଖଣ୍ଡେ କୋଚରା ଗାମୁଛା, ଘୁମ୍ବ କାନ୍ଦଭଙ୍ଗା ମୁହଁ, ଫେଣ୍ଟୁ ନାକ, ଆଉ ଆଖିଯୋଡ଼ାକ ମିଶି ପଢ଼ଆର ଯେଉଁ ଚେହେରା ତିଆରି ହୋଇଥିଲା, ସେ ଆଡ଼କୁ ଦୃଷ୍ଟି ମୁନସି ବାବୁ ନିଜ ଅଜାଣତରେ ଖେଁ କରି ହସି ପକାଇଲେ । ସାଙ୍ଗେ ସାଙ୍ଗେ ଜମା ହୋଇଥିବା ଲୋକ ବି ହସି ଉଠିଲେ । ପଢ଼ଆର ମାମୁଁ ପଦଟା ସେହିଦିନୁଁ ସାବ୍ୟସ୍ତ ହୋଇଗଲା ।

ପୋଖରୀକୁ ଯିବା ବାଟରେ ଛକଡ଼ ପଢ଼ଆକୁ ପଚାରିଲା, “ନବୀନା ଏବେ ଚିଠି ପତ୍ର ଦଉଚି ନା ?”

“ନବୀନା କଥା କାହିଁକି ପଚାରୁଚୁ ? ସେ କଣ ଚିଠି ପତ୍ର ଦବ ? ମୁଁ ପରା ଚିଠି ଦେଇ ଦେଇ ଥକିଲିଣି ! ଟଙ୍କା ପଇସା ନ ଦେଲୁ ନାହିଁ, ପଦେ ହେଲେ ଲେଖନ୍ତା ବେ ?” ତାହା ପରେ ନବୀନାର ଜନ୍ମ ବିଷୟରେ ତାହାର ମାଆକୁ ମଧ୍ୟ ଅପବାଦ ଦେଇ ପଢ଼ଆ ଗାଳିଦେଲା ।

ଗୌରାଙ୍ଗ କହିଲା, “ନବୀନା ସେଠି କଲିକତାରେ ଅଛନ୍ତି ?”

ପଢ଼ଆ କହିଲା, “ଏବେ ଆଠ ଦିନ ତଳେ ଫକୀର ଜେନା କଲିକତାରୁ ଫେରି ଯାହା କହୁଚି, ଶୁଣିନୁ କି ?”

“କଣ କହୁଚି ?”

“କହୁଚି ପରା ନବୀନା ଏବେ ଗୋଟାଏ ବାବୁ ହୋଇ ଗଲାଣି । ଅଙ୍ଗା, ଯୋତା, ଛତା ଦେଖିବ କିଆଁଣ ! ସାଙ୍ଗକୁ ପୁଣି କିଏ ଗୋଟାଏ ଛତରଖାଇ ଯୁଟିଚି ଯେ, ତା ପାଖରେ ବହୁତ ଟଙ୍କା ପଇସା, ସୁନାରୁପା ।

“ତେବେ ତ ପଢ଼ଆ ମାମୁଁର ଦୁଃଖ ଗଲା ।”

"ସେ କଥା କାହିଁକି କହୁଚୁ ପୁତ, ବାପ ମୁଡ଼ି ବୋଝ ମୁଣ୍ଡେଇ ଚନ୍ଦା, ମାଆର ତ ଯୋଡ଼ି ଗୋଟେଇବା ଫନ୍ଦା । ପୁଅ ଆମର ପୁଣି କେମିତି ଯୋଗ୍ୟ ପଡ଼ଚନ୍ତି, ଶୁଣିନ କି ? ଯେ ଯାଉଚି, ତାକୁ କୁଆଡ଼େ କହୁଛି, ସେ ଛତରଖାଇଟା ତାର ବୋଉ ।"

ବରଜୁ ଗମ୍ଭୀର ହୋଇ କହିଲା, "କଣ ହେଲା ?"

"ମୁଁ କଣ ମିଛ କହୁଚି ? ଫକୀର ଜେନା ପରା ମୋ ହାତ ଛୁଇଁଲା ! ସେଇ ଛତରଖାଇକି ନଖାନା କହୁଚି ତାର ବୋଉ । ଏ କଥା ମୋ ଭର୍ମି ଶୁଣେଇଲା ।"

ଗୌରାଙ୍ଗ କହିଲେ, "ପଦଆ ମାମୁଁ, ବଙ୍ଗଦେଶରେ ନିଜ ଘରମଣିଷଙ୍କୁ ପରା 'ବୋନ୍' କହନ୍ତି ।"

"ହେଲେ ହେଉଥିବ । ତାହାହେଲେ ବି ନସାନା କଣ କମ୍ କଥା କହିଲଣି !"

ପୂର୍ବ ପରି ବରଜୁ କହିଲା, "ନାହିଁ ତ କମ୍ କଣ । ଟୋକାଟା ତ ନଷ୍ଟ ହୋଇ ଯାଉଚି । ଏଥିଣି ଉପାୟ ?"

ପଦଆ କହିଲା, "ଆଉ ଉପାୟ କଣ ? ମୁଁ ଭାବୁଚି ସେ ଯାହା ମୋ ପୁଅ ହୋଇ ଜନମି ଥିଲା, ମୁଁ ହେଲେ ତା ପୁଅ ହୋଇ ଜନମି ଥାନ୍ତି !"

ଏ କଥାରେ ବରଜୁ ମଧ୍ୟ ହସି ପକାଇଲା ।

ପୋଖରୀକୂଳକୁ ଆସି ପଦଆ, ଛକଡ଼ା ଜାଲ ଖିଅ ଧରି ପାଣି ଭିତରକୁ ପଶିଲେ । ବରଜୁ ପାଣି ଭିତରେ ପଶି ମାଛ ଅଡ଼େଇଲା ।

ଗୌରାଙ୍ଗର ମାଛ ଧରା ସଉକ ସବୁ ଯାଇଛି । ଖିଅଜାଲ, ଖେପାଜାଲ, ଜାଲ, ପୋଳୁହ, ଦାନ୍ତୁଆ, ଘଞ୍ଜରା—ଯେତେ ରକମ ଯନ୍ତ୍ର ଘରେ ସାଇତି ରଖିଥିଲା, ତିନ ବର୍ଷ ହେଲା ସେଗୁଡ଼ିକୁ ଲୋକେ ମାଗି ନେଇ ଭାଙ୍ଗିଛିଣ୍ଡି ଫେରାଇ ଦେଇଛନ୍ତି । ଖାଲି ଖିଅଜାଲ ଖଣ୍ଡିକ ଟିକିଏ ଯାହା ଭଲ ରହିଛି ।

ପାଣିକୁ ଉଣ୍ଢାଇ ବରଜୁ କହିଲା, "ପୋଖରୀଟାକୁ କଣ କରି ପକାଇଚୁ, ଗୌର !"

ଜାଲ ଖିଅର ଗୋଟିଏ ପାଖ ଝଙ୍କଢ଼ ହାତକୁ ବଢ଼ାଇ ଦେଇ ପଦଆ ଦଳ ଆଡ଼େଇ ପାଣି ଭିତରେ ତିନ ବୁଣଟା ଠୁକା ମାରିଲା । ଆହୁରି ଦ' ଖୋଳ ଭିତରକୁ ପଶି କହିଲା, ପୋଖରୀ ନୁହେଁ ଯେ ଗୋବର ଖାତ । ଉହୋ, ଏତିକି ପଙ୍କ ! ଯା ଭିତରେ ଆଉ କେତେ ମାଲ ମସଲା ଅଛି ଦେଖ ।" ପଦଆ ଡାହାଣ ଗୋଡ଼ ଆଙ୍ଗୁଠିରେ ଖଣ୍ଡେ ସଡ଼ା ଦାଉଁଣ ଟାଣି ପାଣି ଭିତରୁ କାଢ଼ି ବନ୍ଧ ଉପରକୁ ଫିଙ୍ଗି ଦେଲା । ବରଜୁ ହାବୁକା ମାରି ଜାଲ ଭିତରକୁ ମାଛ ଅଡ଼ାଉଥିଲା । ପୋଖରୀଟା ପଙ୍କରେ ଭର୍ତ୍ତି ହୋଇ ଯୁଆଡ଼େ ଗୋଡ଼ ବଢ଼ାଇଲେ ପାଣି ଭିତରୁ ସାନବଡ଼ ହୋଇ ପୁଳାଏ ଭୁଡ଼ ଉଠୁଥାଏ ।

ପୋଖରୀକୂଳ ଉଉଗଛ ଡାଳରେ ଗୋଟାଏ ଗଙ୍ଗେଇ ଚଢ଼େଇ ବସିଛି । ମଝିରେ ମଝିରେ ଉଡ଼ି ଆସି ପୋଖରୀ ଉପରେ ଡେଣା ଥରାଇ ଶୂନ୍ୟରେ ରହିଲା ଭଳି ଅଣ୍ଟା ତଳକୁ ନୁଆଇ ଲକ୍ଷ୍ୟ ଅଥୟ ରଖୁଛି । ତାହା ପରେ ସିଧା ଏକ ଝାଂପ ମାରି ପାଣି ଭିତରୁ ମାଛଟାଏ ଥଣ୍ଟରେ ଧରି ଉଉଡ଼ାଳରେ ଯାଇ ବସୁଛି । ତାଣ୍ଡ ଆମ୍ବ ଗଛରେ ରହି ରହି ଖିଙ୍କାରି ଉଠୁଛି, ସେହି ହନୁ ମାଙ୍କଡ଼ଟା । ପୁଣି ପୋଖରୀ ଉପରେ ପବନ ଆଣି ପକାଇ ଦେଇଯାଉଛି ଘରସ୍ତେ

ଲେଖାଏଁ ଧୂଳି, ଆଉ ଶୁଖିଲା ବାଉଁଶ ପତ୍ର । ପୋଖରୀ ହୁଡ଼ା ସେପାଖ ବେତ ବୁଦାରୁ ଦୁଇଟା ଝିଙ୍କାରି ବାଦବୁଦଆ ହୋଇ ନାଗେଶ୍ୱର ବଜାଉଛନ୍ତି । ଏପାଖ ଭୂଠ ଉପରେ ଗୋଟାଏ କଅଁଳା ବାଛୁରୀ ଅକାରଣରେ ଏଣିକି ତେଣିକି ଧାଉଁଛି ।

ଗୌରିଙ୍ଗ ପୋଖରୀଭୂଠର ମାଙ୍କଡ଼ାପଥର ପାହାଚ ଉପରେ ଠିଆ ହୋଇ ମାଛଧରା ଦେଖୁଛି । ତିନି ବର୍ଷ ତଳେ ଶହେ ସତ୍ତର ସେହି ଯାଆଁଳ ଏହି ପଡ଼ିଆରେ ଛଡ଼ା ହୋଇଥିଲା । ତା'ପରେ ମାସ ଗୋଟାଏ ଯାଇ ନାହିଁ ଚତୁର୍ଥ ଦଣ୍ଡରେ ଆସିଲା ବଢ଼ି । ସେହି ବଢ଼ିରେ ଗାଆଁ ଗୋଟାକର ଫସଲ ତ ଏକାବେଳକେ ମୂଳପୋଛ ଧୋଇଗଲା । ପୁଣି ପଛେ ପଛେ ଆସିଲା ହଇଜା ଯେ, ହରିପୁର ଭଳି ତିନି ହଜାର ବସ୍ତିର ବଡ଼ ଗାଁଟାରୁ ଛ'ପଣ ଲୋକ ଖାଲି ହୋଇଗଲେ । କେତୁଟା ଦୁଃଖରେ ଏକାବେଳେ ଭଣ୍ଡା ଛଟା ହେଲା । ଗୌରଙ୍ଗର ବାପ, ଭାଇବୋହୂ, ବିଧବା ଖୁଡ଼ୀ, ଭେଣ୍ଡାପିଲା ପୁଅ ପୁତୁରା ବୃଦ୍ଧଜଣ ସଣ ଦେଲାଭଳି ଉଦେ ଉ ଉନ ଅନ୍ତତ ସେହି ହଇଜାରେ କୁଆଡ଼େ ଉଭେଇ ଗଲେ । ଏମିତି ବିପତ୍ତି ପଡ଼ିଲା, ମଡ଼ା କାଢ଼ିବାକୁ ଅବା ଜାଳିବାକୁ ବି ଲୋକ ମିଳିଲେ ନାହିଁ, କି କାହାରିକି ଗତି ହେଲା ନାହିଁ ।

କେତେ ଯୁଗର ଏହି ତିନଟାବର୍ଷ । ଗୌରଙ୍ଗର ଆଖି ଯୋଡ଼ିକ ମାଛଧରାରେ ରହିଥାଏ ସିନା, ମନଟା ଯାଇ ପଡ଼ିଥାଏ ତିନି ବର୍ଷ ପଛରେ । ସେହି ମନଭିତରେ କେତେ ଚିନ୍ତା ଖେଳି ବୁଲୁଥିଲା । ତାର ତେର ବର୍ଷର ପୁଅ ମାଧବ । ନିଜ ହାତରେ ତିନି ବର୍ଷ ତଳେ ଏହି ପଡ଼ିଆରେ ସେ ମାଛ ଜାଆଁଳ ଛାଡ଼ିଥିଲା, ମାଛ ବଢ଼ିଲେ ଖାଇବ ବୋଲି । ପଚାଶ ବର୍ଷର ସାନ ଭାଇ ଚଇତନ

ଛାଇ ପରି ବୁଲୁଥିଲା ତାର ପଛେ ପଛେ । ଭଲ କରି ପୋଖରୀ ଖୋଳାଇବ, ପାହାଚ ବାନ୍ଧିବ । ସୁରପଟ ବନ୍ଧଟା ମଜବୁତ ହୋଇ ଚେଢ଼ାଗୁଣି ହେବ । କଲମି ଆମ୍ବ, ପିଜୁଳି ଲାଗିବ । ତିନି ବର୍ଷ ହେଲା ସେ ସବୁ କଥା ମନଭିତରେ ମରି ଯାଇଛି । ତିନି ବର୍ଷ ହେଲା ପୋଖରୀଟାରୁ ଦଳ ଛଡ଼ା ହୋଇ ନାହିଁ । ପଥର ଉପରେ ଶିଉଳି ବସି ଖସଡ଼ା ହେଲାଣି । ତିନି ବର୍ଷ ହେଲା ଗୌରାଙ୍ଗ ଆଇଁଷ ଛାଡ଼ି ଲୁଗାରେ ଗେରୁ ମହେଇ ପିନ୍ଧୁଛି । ଗାଁ ମୁଣ୍ଡ ମେଲଣ ଚୌତାରେ ଭୂଷ୍ଟୀଗ୍ରାଟୁଆଙ୍କର ଯାନ ବୁଢ଼ାଆଖଣ୍ଡ ଗୌରାଙ୍ଗ ଯତ୍ନରେ ଚୂନଲିପା ହୋଇ ଜକଜକ ଦିଶିଲାଣି । ବାବାଜୀମାନେ ମୁଣ୍ଡରେ ଲମ୍ବାଜଟା ଗୁଡ଼ାଇ, ଗେରୁଆ କୌପୀନରେ ଦେହଟାର ଷୋଳଭାଗରୁ ଭାଗେ ଘୋଡ଼ାଇ, ପୃଷ୍ଠି କାନ୍ଧରେ ଖଣ୍ଡେ ଲେଖାଁ ମସ୍ତ ଜାଲପତି ଝୁଙ୍ଗା ଧରି ଝମ୍ପିଯାନ୍ତି । ତିନି ବର୍ଷ ହେଲା ଗୌରାଙ୍ଗ ତାଙ୍କରି ପିଛା ଧରିଛି । ପୋଖରୀକୁ ଗୁହିଁ ଦେଲେ ଅଣଲେଉଟା କଥା ତା ଆଖି ଆଗରେ ଭାସି ଯାଉଥିଲା । ତେଣେ ନ ଫେରିବା ମୁହଁ ଫେରି ଯାଉଥିଲା !

ହଠାତ୍ ପଡ଼ଆ ପାଣି ଶୁଣି ମାଛଧରା ଆଡ଼କୁ ତାହାର ମନ ଫେରିଲା । ଜାଲ ଠାଣୁ ଠାଣୁ ଯୋଡ଼ାଏ ବଡ଼ ସେଙ୍କ ଡଆଁ ମାରି ଖସିଗଲେ । ଖିଅଟାକୁ ଉପରେ ଉଠାଇ ଦେଖାଗଲା ପୁଞ୍ଜାଏ ପାଣ୍ଟଟା ସାନ ଚିଙ୍ଗୁଡ଼ି, ପୋହଳା, କେରୁଟା କୁଲଗେଣ୍ଡା, ଗୁଡ଼ାଏ ଦଳ ଆଉ ମେଞ୍ଚାଏ ପଙ୍କ ମିଶା ପତ୍ର ଓଳପଦ । ପଥର ଉପରେ ବସିପଡ଼ି ଗୌରାଙ୍ଗ କହିଲା, "ଓଉଗଛ ମୂଳକୁ ଗୋଟାଏ ଫଟା ଦେଲ ଦେଖି ।"

ବରଜୁ ପରିହାସ କରି କହିଲା, "ମାଛ ଖାଇବା ତ ଛାଡ଼ିଲୁ, ଧରେଇବାକୁ ଆଗ୍ରହ କରୁଚୁ କାହିଁକି ?" ଗୌରାଙ୍ଗ ଯେଉଁ ଧାରା ନେଇଚ୍ଛି, ତହିଁରେ ଆଇଁଷ ଖାଇବା ମନା ନାହିଁ । ତେବେ ମାଛ

ମାରିବାକୁ ମନା । ସେ ଖାଲି ଗୁଏଁ ମାଛଖିଆ ଗୁଡ଼ ଦେଉଛି । କଥାଟାକୁ ବରଜୁ ଯେଉଁ ସହଜରେ କହି ପକାଇଲା, ତାହାର ଫଳ ସେତେ ସହଜ ହେଲା ନାହିଁ । ଗୌରଙ୍ଗ ମନରେ କଥାଟା ଯେ ହଠାତ୍ ବାଜେଇ ହୋଇଗଲା, ତାହାର ମୁହଁ ଉପରେ ଆଖି ପକାଇ ବରଜୁ ବୁଝି ପାରିଲା । ସିଧା କଥାଟାଏ କହି ଦେଇ ତାକୁ ଫେରାଇ ନେଇ ଆଉ ଗୋଟାଏ କଥା ବାଁରେଇ ବରଜୁକୁ କହି ଆସେ ନାହିଁ । ସେଥିପାଇଁ ତାକୁ ବ ଲାଜ ପଡ଼ୁଆ ଲାଗିଲା ।

ଓଉଗଛ ମୂଳେ ଖିଅଟାକୁ ଟେକି ଦେଲାକ୍ଷଣି ଉନଟା ବଡ଼ ରୋହି ତାହା ଲଡ଼େଇ ଛଟପଟ ହୋଇ ଜାଲକୁ ଛିଣ୍ଡାଇଦେବା ଉପରେ । ମାଛକୁ ଦେଖି ଧବଳଙ୍କ ମନ ଖୁସି ହୋଇଗଲା । ପଣିଆ ଗୋଟିଏ ହେଞ୍ଜି ମାରି କହିଲା, "ଯା' ହଉ, ଆଜି ତେବେ କାର୍ତ୍ତିକ ଉଜୁଆଁ ହବ ।"

× × × ×

ଗୁରୁ ଲେଉଟିଲା ବେଳକୁ ନଟବର ଭାଇ ଭାଇଜଙ୍କୁ ଦଣ୍ଡବତ ହୋଇ ବାହାରିଲେ ଘରକୁ । ଗୌରଙ୍ଗ ତାହା ସାଥିରେ ଆସୁ ଆସୁ ନଟବର ତାକୁ କହିଲା, "ଭାଇଙ୍କୁ ବୁଝାଇ ସୁଝାଇ ଯେମିତି ଆଠ ଦିନ ଭିତରେ ସେ ଘରକୁ ଫେରାଇ ଦିଏ ।" ଗୌରଙ୍ଗ ଟିକିଏ ମୁରୁକି-ପଣିଆ ଦେଖାଇ କହିଲା, "ଏଥିରେ ତୁ ଭଲ ମନ ଓଣା ଭାଙ୍ଗୁଛୁ କାହିଁକି ? କଥାରେ କହନ୍ତି, 'ଯେତେ ଭାଇ ସେତେ ଘର ଯେତେ କଣଆଁ ସେତେ ବର,' ଯା ତୁ କଣ ଶୁଣିନୁ ?"

ନଟବର କହିଲା, "ହଁ, ଶୁଣିଚି ଯେ, ଭାଇ ସିନା ନଆସି ଘର କଣ ରହିଲେ ଦୁଅନ୍ତା । ସେଥିରେ ମତେ କଣ କିଏ କହନ୍ତା କି !

ଘର ନାହିଁ, ଦୁଆର ନାହିଁ, ପିଲାଛୁଆଙ୍କୁ ଧରି ସେ ଏକା ଜିଦ୍‌ରେ ଯେ ବାହାର ଆସିଲେ, ଏବେ ଉଠିବେ କେଉଁଠି ?"

ଗୌରଙ୍ଗ ପୁଣି ବୁଝାଇ କହିଲା, "ସେ ଯେଉଁଠି ରହନ୍ତୁ, ସଂସାର ସୁଖ ତ ଜାଣି ଯିବେ ନାହିଁ ! ଘର ଦୁଆର କଥା କହୁଛୁ ଯେ, ମୋର ଘର ବୋଲି ଆଜ ଯାହା ଅଛି, ତିନ ବରଷ ତଳେ ତ ସେଇ ଘର ତୁ ଦେଖିଥିଲୁ ! ଆଜ କଣ ହେଲାଣି, ତା ତ ଦେଖିଲୁ । ଘର ଦୁଆର, ଗାଈଗୋରୁ, ପୁଅ ଝିଅ, ଭାଇ ଭାଇବୋହୂ—ସବୁ ତ ମୋର ଥିଲା । ଆଜ କାହିଁ ? ସେ ଗୁଡ଼ା ଖାଲି ବୁଝିବା ଭୁଲରେ ଛକଡ଼ି, ବୁଝିବା ଭୁଲ୍ । କି ଘର କାହାର, କିଏ କାହା ପୁଅ, କିଏ କାହା ଘର ?"

ଛକଡ଼ିର ମନ ଏତେ କଥାରେ ଲାଖୁ ନ ଥାଏ, ଥରକୁ ଥର ଖାଲି ଗୋଟାଏ କଥା ଘାଣ୍ଟି ଚକଟି ହେଉଥାଏ, ବଳଭଦ୍ର ଆଉ ଘରକୁ ଲେଉଟିବ ନାହିଁ । ନା, କଦାପି ନୁହେଁ । ସେ ଗୌରଙ୍ଗଙ୍କୁ ଜୋର କରି କହିଲା, "ଗଉର ଭାଇ, ତୁମେ ମୋ ରାଣ ମଣା । ଆଠ ଦିନ ଭିତରେ ଭାଇଙ୍କି ବୁଝେଇ ପଠେଇ ଦବ ।"

"ସତେ ତୁ ଜମା ସମଝି ପାରିଲୁ ନାହିଁ ।" ଗୌରଙ୍ଗ ପୁଣି ତାକୁ ତତ୍ତ୍ୱ କଥା କହିବାକୁ ଯାଉଥିଲା ।

ଛକଡ଼ି ତହିଁରେ ବାଧା ଦେଇ କଟାଳ କଲା, "ଦଉ ପଡ଼େ ଭାଇ, ମୁଁ ନିଗମ କଥା କାହୁଁ ବୁଝିବି ? ତୁମେ ଖାଲି ଜବାବ କର, ଭାଇଙ୍କୁ ଆଠ ଦିନରେ ନେଉଟାଇ ଦବ ।"

ଗୌରଙ୍ଗ କହିଲା, "ତୁ କଣ ନିଜ ଭାଇ କଥା ଜାଣି ନାହୁଁ ଯେ, ତାଙ୍କ ମନ ନ ହେଲେ ମୋର କଥାରେ ସେ ଲେଉଟି ଯିବେ !

ସେ ତ କହୁଛି ଶବ୍ଦେ ପକ୍ଷଣ କୋଣରେ ନାହାନ୍ତି ! ବେଳକନା ଆସିବାକୁ ତତେ କିଏ ମନା କରିଛି କି ?"

କଥା ଗପୁ ଗପୁ ଦୁହେଁ ହରିପୁର ଗାଁର 'ନୂଆପାଟଣା ଭେଇଁ ଥାନା ପାଖ ଡାକଘର ଯାଏ ଆସି ଯାଇଥିଲେ । ସେଠାରୁ ଗୌରଙ୍ଗ ଫେରିଲା ।

ବାଟଯାକ ଖାଲି ଘର କଥା ଘରେ ଘରେ ଛକଡ଼ି ଗାଁରେ ପଡ଼ିଥିଲା । ପଧାନପଡ଼ା ଭିତରକୁ ପଶିବା ଆଗରୁ ହରିମିଶ୍ରଙ୍କ ଘର ପଡ଼େ । ତାଙ୍କ ବାଣ୍ଡ ଦୁଆରେ ଗୋଟାଏ ଭିକାରୀ ଧୁଡ଼ୁକ ବଜାଇ ଗୀତ ବୋଲୁଥାଏ, "ବାଇଧନ ତ, ବାଇଧନ ଗଲେ ବୃନ୍ଦାବନ ତ, ବାଇଧନ ତ ।" ଭିକାରୀଟା କେବେ ଆଗରୁ କେବେ ପଛକୁ ଟଳଟଳ ପୁଣି ଧୁଡ଼ୁକ ତୋର ପାଖରେ କାନଟାକୁ ଲଗାଇ ତାହାର ଶିରୀମସ୍ତ ଆଙ୍ଗୁଠିରେ ଦେଇ ଗୋଟାକର ଜୋର ଖଟାଇ ଧୁଡ଼ୁ ଧୁଡ଼ୁ କଣ୍ଠ ବଜାଇ ଦେଉଛି, "ବାଇଧନକୁ ମୁଁ ଗୁଡ଼ ଆଣିଲି ଭାଗର ଦୁଃଖସୁଖ ଧନ ତ, ବାଇଧନ ତ ।" ତାହା ମଝିରେ, "ହଉ ଆଜ୍ଞା, ଭିଖ ଗଣ୍ଡିଏ ମିଳୁ ଆଜ୍ଞା"—ଡାକ ।

କୁଟା ଗୋଟିଏ ମୁଣ୍ଡାଇ ନଡ଼ା ଦାଣ୍ଡରେ ବୁଲୁଥିଲା । ବୁଲିବାବେଳେ କୁଟା ଉହଳି ତାହାର ଗୁଡ଼ପାଙ୍କ ଦୋଡ଼ାଇ ହୋଇ ପଡ଼ୁଥାଏ । ଯେମିତି ଅବା ଖାଲି ଗୋଟାଏ କୁଟା ବୋଝର ଯୋଡ଼ାଏ ଗୋଡ଼ ! ତାହାର ଭିତରୁ ଛକଡ଼ିକୁ ଚିହ୍ନିପାରି ସେ କହିଲା, "ହରିପୁର ଯାଇଥିଲୁ ପରା ! ଘରେ କେଉଁଣ ଘରେ ଅଛନ୍ତି କି ?" ତାକୁ ଖାଲି 'ହଁ' ଟାଏ ମାରି ଦେଇ କେମିତି ସହଜ ଯାଇ ଘର ଭିତରେ ପଶିବ, ଛକଡ଼ିକୁ ବାଟ ଦିଶିଲା ନାହିଁ । କେତେବେଳକ ଗାଁରେ ଘରେ କଥା

ପଚାରିବେ । ସେ କାହାକୁ କଣ କହିବ ? କଥା ପୁଣି ତାକୁ ପଛରୁ ଡାକୁ ଡାକୁ ସେ ଗାଁ ଦାଣ୍ଡରୁ ସୁରୁଖୋଜ କରି ଘର ଭିତରେ ପଶିଗଲା ।

ଘର ଭିତରେ ସେହିମତି କେତେ କଥା ପଡ଼ିଥିଲା । ରନ୍ଧାବଢ଼ା କରି ଖାଇବାକୁ ବେଳ । ତାଳ ଆଣି ପାନ ଭାଙ୍ଗି ବସିଲା । ଘରବାଡ଼ି, ଚାଳ ବଗିଚା, ଗୋରୁ ଗାଈ । ଛକଡ଼ି ହିଁ ନାହିଁ କରି ଶେଷରେ ଭୁମା ହୋଇ ଶୋଇପଡ଼ିଲା ।

ସ୍ୱପ୍ନରେ ସେ ନବରେ ଦେଖିଲା, ସେହି ଧୂଳିଭରା ଭିଖାରୀକୁ । ମୋଡ଼ା ଗୋଟିଏ ଫଟା ଚାଦର ଲମ୍ବା ଲମ୍ବା ଠେଙ୍ଗ ଯୋଡ଼ାକୁ ଦୋହଲାଇ ପେଟଟାକୁ ଖାଲି ଦେଉଛି ଯେ, ତା ଭିତରେ ଅବା ଉଜଣୀଏ ଭୁଜଙ୍ଗ ପଶିଯିବ । ପୁଣି ହାଡ଼ମାଳ ଦେହଟାକୁ ଏପାଖ ସେପାଖ ନଚାଇ ସେ ଗୀତ ବୋଲୁଛି, "ବାଇଧନ ରେ, ବାଇଧନ ଗଲେ ବୃନ୍ଦାବନ ରେ । ବାଇଧନକୁ ମୁଁ ଖୁଡ଼ି ଆଇଲି—।"

ସେହିମତି କଥାରେ ନିଦଟା ତାର ସୁହଁକନା ଭାଙ୍ଗିଗଲା । "ହଇ କଏ, ଝାଉଜ ତମର ଆଉ କଣ କହୁଥିଲା ମ ।" ଅଧା-ନିଦଆ ହୋଇ ଛକଡ଼ି କହିଲା, "ହଁ, କହୁଥିଲା, କହୁଥିଲା, ବାଇଧନ ରେ ।"—"ଏଁ ? କଣ କହୁଥିଲା ?" ପୁଣି ଛକଡ଼ିର ଘୁଙ୍ଗୁଡ଼ି ଶୁଣାଗଲା । ପୁଣି ସେଇ ପେଟଖଲା ଧୂଳିଭରାର ଗୀତ— "ବାଇଧନ ରେ, ବାଇଧନ ଗଲେ ବୃନ୍ଦାବନ ରେ—।"

ଏମା ଦିନକେତେ କଟି ଗଲା । ଦୁଇ ଭାଇଙ୍କ ଭିତରେ ଦେଖା ଚାହାଁ ହୋଇ ପାରିଲା ନାହିଁ । ବରଂ ନହେଲେ ଘରର କେଉଁ କଥା ହେବ ନାହିଁ ବୋଲି ଛକଡ଼ି ଯାହା ଆଗରୁ ଡରୁଥିଲା,

ସେ କଷ୍ଟତା ତାହା ମନରୁ ଆସ୍ତେ ଆସ୍ତେ ଉହ୍ଲାଇଗଲା । ଗୋରୁ ଗାଈ, ହଳ ବାଡ଼ି ସବୁଥିରେ ମନ ଲାଗିଲା । ଟିକିଏ ଛୁଟି ମିଳିଲେ ସେ ବୃଦ୍ଧ ମିଶ୍ରଙ୍କ ପାଖରେ ବସି ଖୁସି ଗପ କରେ । ମିଶ୍ରେ ବି ତାହା ଉପରେ ବଡ଼ ସନ୍ତୋଷ । ଘର ଧନ୍ଦାରେ କେବେ କେଉଁ ଦିନ ଦେଖା ନ ହେଲେ ନିଜେ ତା ଦ୍ୱାରକୁ ବୁଲି ଆସନ୍ତି । ଭିତରକୁ ପଶିଯାଇ ଡାକନ୍ତି, "କିରେ ପୁତ, କଣ ତ କାମ ଲାଗିଛି ଯେ, ଟିକିଏ ଦେଖା ଦର୍ଶନ ନାହିଁ ।" ଛକଡ଼ି ବାଡ଼ି ପଟୁ ବାହାରି ଆସି ତାଙ୍କ ପାଖରେ ପାନ ଭାଙ୍ଗି ବସେ । ମୁଗ ଓଳିଆ ଉପରେ ଆଖି ପକାଇ ମିଶ୍ରେ କହନ୍ତି, "ଭଲ ମୁଗ ତ ଆମଦାନି କରିଛୁ । ବୃଷଭର ଆସେ ନାହିଁ ବୋଲି ଭାବୁଥିଲୁ ପରା ।" ଛକଡ଼ି ଉତ୍ତର କରେ, "ଚାଷ କରିବ କଣ ମଉସା, ହଡ଼ାଙ୍କ ଅବସ୍ଥା ଦେଖୁ ନ ?"

"ନାହିଁକି ଦାମୁଡ଼ିଟିଏ କିଣୁ ନାହୁଁ ।" ଦାମୁଡ଼ି କିଣିବାକୁ ନଗଦ ପଇସା ଦରକାର । ଛକଡ଼ି ମାସକୁ ଟଙ୍କାକେ ଅଣାଏ ସୁଧରେ ମିଶ୍ରଙ୍କ ଠାରୁ କରଜ ବସ୍ତୁ କରି ଦାମୁଡ଼ି କିଣିଲା । ବାକି ଯାହା ବଳିଲା ତହିଁରେ ଜେଜମଣି ପାଇଁ ଶାଢ଼ୀ ଆଣିଲା । ସାଙ୍ଗ ମେଳରେ ଭୋଜି ଖଚ କରି ଉଡ଼ାଇଲା ।

ଗୌରାଙ୍ଗ ଘରେ ବଉଳକୁ ପାଦ ଦେଇଛି କି ନାହିଁ, ତହିଁ ଆର ଦିନ ସକାଳେ ନିଦ ମଳମଳ ଆଖିରେ ଗୌରାଙ୍ଗ ତାହାର ବାରିପଟକୁ ଯାଇ ଦେଖିଲା, ସେ କାଙ୍କ ଖଣ୍ଡେ ଧରି ପୋଖରୀକୂପର ପଡ଼ିଆ ଉପରଟାରୁ ଅଧେ ସଫା କରି ସାରିଲାଣି । ଗୌର କାବା ହୋଇ ଚାହିଁ ରହିଲା । ବଉଳକୁ କଣ ରାତିସାରା ନିଦ ନାହିଁ ! ପାଦତଳୁ ଟିଙ୍ଗଣା ବନ୍ଧିଲା ପରି ତାହାର ଖଳା ଦେହଟାରୁ ଧାର ଧାର ଝାଳ ଗଡ଼ି ପଡ଼ୁଥାଏ । ତାହାର ବାହା ଆଉ ଗୋଡ଼ାର ମାଂସପେଶୀଗୁଡ଼ାକ ଫୁଲି ଉଠୁଥାଏ । କଅଁଳା ପଛପଟ ବେଲୁନ-ଗଛଟାରେ କାହାରେ କି ଓ' କାହାଣ ବାଦୁଡ଼ି ଲଟକି ରହି ମଝିରେ ମଝିରେ ଡେଣା ଖଡ଼ ଖଡ଼ କରୁଛନ୍ତି ।

"ଏ କଣ ଭାଇ, ତେବେ ମୁଁ ତୁମକୁ ମାଟି ହାଣିବାକୁ ଡାକି ଆଣିଥିଲି ?"—ବ୍ୟସ୍ତ ହୋଇ ଗୌରାଙ୍ଗ କହିଲା ।

ବଉଳ ମୁହଁ ଫେରାଇ ଚାହିଁଲା, "ନାହିଁ ରେ, ଏଗୁଡ଼ା ଯେମିତି ଅଡ଼ମା ହୋଇ ପଡ଼ିଥିଲା, ପୁଞ୍ଜାଏ ଖାର ମଞ୍ଜି ପୋତି ଦେଇ ଓ'କୁଦା କାକୁଡ଼ ଝଙ୍କାରୁ ସୋଲଦେଲେ ଫଳ ନାହିଁ ? ତୁ ଆସି ଏଠୁ ଘାସତକ ବାଛୁ ଦେଲୁ ?" ଗୌରାଙ୍ଗ ଉତରର ଆଉ ତୁଣ୍ଡ ଫିଟିବାକୁ ବାଟ ନ ଥିଲା । ଲୁଣ ହୋଇ ଯାଇ ଅଧୁଆ ମୁହଁରେ ଘାସ ବାଛୁ ବସିଲା ।

ତାହା ଘରେ ଗୋଡ଼ ଦେଇ ନ ଦେଉ ବଉଳ ଯେ କାଙ୍କ ହୋଡ଼ ଧରି ମାଟି ହାଣିବ, ଏ କଥା ଗୌରାଙ୍ଗକୁ ଖରି ଅଡ଼ୁଆ ଲାଗୁଥାଏ । ଦରିପୁର ଗାଁଟାର ଲୋକେ ଭଲା ତାକୁ କଅଣ କହିବେ ? କାହିଁକି, ତା'ର ତ ଯୋଡ଼ାଏ ବାରମାସିଆ ମୂଲିଆ ଅଛନ୍ତି । ବଉଳ

ତାହାର ବନ୍ଧୁ ଲୋକ, ଏସବୁ ମୂଲିଆ କାମ ସେ କରବ କାହିଁକି ? ଭାଗ୍ୟକୁ ବଡ଼ ଖେଳଟା, ପୁଣି ବାଉଁଶଟେ ମାଟି ହାଣୁଥିବାରୁ କାହାର ଆଖିରେ ପଡ଼ ନାହିଁ ବୋଲି ସିନା ! ତେବେ ବ ବରଜୁକୁ ଭରସି ସେ ମନା କରିପାରୁ ନାହିଁ—କମିତି କହିବ ? ଏହେ କଥା କହିଲାରୁ ତାକୁ ତ ପୁଣି ଘାସ କାଟୁବାକୁ ପଡ଼ିଲା । ଗୌରାଙ୍ଗ ତା'ବାହାଡ଼େ ଭଲ କେବେହେଲେ ଏ କାମ କରିଥିଲ ? ହଁଟପୁର ଗାଁଟାରେ କେଣେ ଘରକୁ ନ ଜାଣେ କିଏ ? ତିନି ହଳ ବଳଦର ଚାଷ । ମୂଲିଆ ଲୁଗାଙ୍କୁ ତ କାମ ନଅଣ୍ଟ—ସେ କରନ୍ତା କାହିଁକି ?

ବରଜୁର ମାଟିହଣା ପାଖରେ ବସି ଘାସ କାଟୁବାରେ ଗୌରାଙ୍ଗକୁ କିଛି ଗୋଟାଏ ନୂଆ କି ସ୍ତୁଟ କଥା କଲାଭଳି ଜଣାଗଲା ନାହିଁ । ବରଜୁ ଯେମିତି ସହଜରେ ତାକୁ ଘାସ କାଟିବାକୁ ଡାକିଲା, ଗୌରାଙ୍ଗ ବି କିଛି କହିବାକୁ ଫୁରସତ୍ ନ ପାଇ ସେମିତି ତାହାର କଥା ମାନିଲା । ମଝିରେ ମଝିରେ ସେ ଖାଲି ଥରେ ଲେଖାଏଁ ବରଜୁର ମାଟିହଣାକୁ ଚାହିଁ ଦେଇ ପୁଣି ଘାସ କାଟୁବାରେ ଲାଗିଥାଏ ।

ବରଜୁର ଚେହେରାକୁ ସେତେବେଳେ ଚାହିଁ ଗୌରାଙ୍ଗ ମୁଣ୍ଡରେ କିମିତି ଗୋଟାଏ ଚିନ୍ତା ପଶିଗଲା । ମାଟିହଣା, ଘାସକଟା, ଯେ ମୂଲିଆଙ୍କ କାମ, ଗୌରାଙ୍ଗ ତାହା ପାସୋରି ପକାଇଲା । ବରଜୁ ଭୁଣ୍ଡରେ କଥାଟା କିଛି ନାହିଁ, ଏକା ଲହସରେ ସେ ମାଟି ହାଣି ଯାଉଛି । ତେବେ ଗୌରାଙ୍ଗକୁ ସେ ଯେମିତି ତାହାର ଭିତରେ କେତେ କଥା କହେଇ ଦେଉଥିଲା । ସେଥିଲାଗି ଏ କାମରେ କିଛି ମାନହାନି ନାହିଁ ବୋଲି ଭାବିବାକୁ ବି ଗୌରାଙ୍ଗ ଡରୁଥିଲା ।

ଘଡ଼ିଏ ନୁହେଁ କି ପହରେ ନୁହେଁ, ସକାଳୁ ସଞ୍ଜଯାଏଁ ବଲ୍ଲଜୁର ଖାଲି ଘରବାଡ଼ି, ବୁଲବଗିଚା, ଗାଈଗୋରୁ କାମରେ ଦିନ ବିତିଗଲା । ଶେଷରେ ଗୌରାଙ୍ଗ ଚରଣ ବି ହଇରାଣ ହୋଇ ପଡ଼ିଲେ । ଦିନଯାକ ପାହାର ଖୁସି ଗପରେ, ନ ହେଲେ ବା କେତେବେଳେ ଅମରସୁମର, ଶୂନ୍ୟସଂହିତା କି ଶଗ୍ରୁ-ଭେଦ ଭଜନ ବୋଲିବାରେ କଟୁଥିଲା, ଏବେ ବରଜୁର ହସ୍ତ ମୁତାବକ କେଉଁଠି ହଳ, କେଉଁଠି କୋଡ଼, କେଉଁଠି ଝଦନ, କେଉଁଠି କୁତ୍ରିଚ, ଆଉ କେଉଁଠି ନସରା ମାଣ୍ଡିର ଖୋଜା ଠିକଣା କରିବାରେ ତାଙ୍କୁ ବେଳ ଅଣ୍ଟୁ ନାହିଁ । ଦାସବୋଇ ହାତ ଲାଗି ଘର ଭିତରେ ମଣିଷ ଥିଲା ପଣ ଟିକିଏ ଦିଶୁଛି । କେଉଁ ଘର କୋଣରେ ମୂଷାମାଟି ଅବା ଉଇହୁଙ୍କା ଗଦା ହୋଇ ନାହିଁ, କି ବେଙ୍ଗ ପକ୍ଷୀ ହାଣ୍ଡି ତଳେ ବଟବଟ କରୁ ନାହିଁ । ସବୁଆଡ଼ ଲିପାପୋଛା ହୋଇ ସଫା ସୁତୁରା ଦିଶିଲାଣି ।

ବଲ୍ଲଜ୍ ଆସିବା ଆଗରୁ ବାହାରେ ଉଦ୍ଧ କୁମ୍ଭୀପାଟୁଆ ଟୁଙ୍ଗିରେ ଧର୍ମଚର୍ଚ୍ଚା କରିବାପାଇଁ ଗୌରାଙ୍ଗଙ୍କୁ ଯେମିତି ସୁଖ ଲାଗୁଥିଲା, ପୁଣି ଘର ଭିତରେ ମଣିଲକ୍ଷଣି ଘରଟା ଯେମିତି ଖାଇ ଗୋଡ଼ାଉଥିଲା, ଏବେ ଦିନ ଘରଟାରେ ସେ କଥା ବଦଳି ଯାଇଛି । ଏଣିକି ସବୁ ତାଙ୍କୁ ଉଶ୍ୱାସ ଲାଗିଲାଣି । ଘରଟାକୁ ଜରଞ୍ଜର ସବୁବେଳେ ଦୂରେଇ ରହିବାକୁ ଆଉ ହେଉ ନାହିଁ ।

ନଜ ଘରୁ ବାହାରି ଆସିଲାବେଳେ ବଲ୍ଲଜ୍ କେଉଁଠିକି ଯିବ, କେଉଁଠି ରହିବ, କିଛି ହେଲେ ସ୍ଥିର ନ ଥିଲା । ଛକଡ଼ ଜମା ଘର ଦୁଆର ଛାଡ଼ି ଆସିବା, ସେତେବେଳେ ଖାଲି ସେ ଠକ୍ ବୋଲି ବୁଝିଥିଲା । ପରେ କଣ କରିବ ସେଥିପାଇଁ ବେଶି ଭାବନା କରିବା କେବେହେଲେ ତାହାର ଅଭ୍ୟାସ ନୁହେଁ । ତାହାର ଅଭ୍ୟାସ ଖାଲି

ଏତିକି ଯେ, ଯୁଆଡ଼େ ଯାଉ କାମ କରୁଚ, ଘଣ୍ଟାଏ ଖାଇ ଖଟେଣି ପିନ୍ଧିବାକୁ ତାଙ୍କୁ ଅଭାବ ହେବ ନାହିଁ । ଜନ୍ମା ପିମ୍ପୁଡ଼ିଙ୍କୁ ଖାଇବାକୁ ମିଳୁଛି, ଆଉ ସେ ମଣିଷ ହୋଇ ଭୋକରେ ମରୁଛି ! ସେ ବୁଝିପାରେ ନାହିଁ, କାହିଁକି ଲୋକେ ଭୋକ ଉପାସରେ ମରନ୍ତି । ଅନ୍ନ, କୁଡ଼ୀଙ୍କ କଥା ସିନା ନଆସୁ ! ଦେହରେ ତାକତ ଥିବାଯାକେ ଦୁନିଆ ଲୋଟାଇ ତ ଅବୁଝ ପାଇଁ ଖଟୁଛି । ଭୋକ ଉପାସରେ ମରିବା ଅଧିକାର ଜଣେ କାହାର ଅଛି କି ? କାହିଁକି ତେବେ ମଣିଷ ମରେ !—କାହିଁକି ?

× × × ×

ବରଜ୍ ଯେତେ ସହଜ ବୁଝିଥିଲା, ସେତେ ସହଜ ଗୌରାଙ୍ଗ ଘରୁ ବାହାରିଯାଇ ପାରିଲା ନାହିଁ । ଗୌରାଙ୍ଗର କଣ୍ଠ ମୁହାଁଳକ ଠିକ୍ ସୂର୍ଯ୍ୟାସ୍ତ ପରେ ଯେତେବେଳେ ସେ ବାହାରିବାକୁ ଯୋଗାଡ଼ କଲେ, ଗୌରାଙ୍ଗ ଆଉ ହଲେ, ଆଉ ଦୁ'ପଦ କହି ମଟାଳି ହଏ । କେବେ କେମିତି ମୁହଁ ନଫେରି ବୁଲିଯାଏ । ଶେଷକୁ ଆଉ ଧସ୍ନହୁଆଁ ହଏ ନାହିଁ । ହଜ ଲେକୁଟା ଭିତରେ ବରଜକୁ ନିଜ ଘର ଭିତରେ ଜଣେ ଚୋର ଧରି ନେଲଣି । କାହିଁକି ସେ ଯୁଆଡ଼େ ବାହାରିଯିବ ! ସେ ଘୁଲଗଲେ ଘରଟା ତ ଆଗଭଳି ଗୌରାଙ୍ଗକୁ ପୁଣି ମାଡ଼ିମାଡ଼ି ପଡ଼ିବ । ସେ ଚଳିବ କିମିତି ?

ବରଜ୍ ଭାବିଲା, "ତେବେ କଣ ଚୋରି ଘରେ ମୁଁ ସବୁ ଦିନ ରହିବାକୁ ଆସିଥିଲି ?"

ଗୌରାଙ୍ଗ ମନ ଟାଣ କରି ଜବାବ୍ ଦେଲା, "ଏ ଘର ମୋର ନା ଆଉ କାହାର, ସେ କଥା କାହିଁକି ଅଜିଯାକେ ବୁଝି ପାରିଲ

ନାହିଁ । ବର୍ଷେ ତିନଟା ଆଗରେ ତ ଏଇଠେ ଲୋକଙ୍କର ଏଇ ଘରଟା ଥିଲା । ପଦାର ଧନ ଭିତରେ ସେ ଘର କଣ ଦେଖିଲ, ନିଜେ ତ ସବୁ ଦେଖିଛ । ସେତେବେଳେ ଫସ ମୁଁ ତୋର କୌତୂହଳ ଯେମନ ଘରୁ ବାହାରିପିବାକୁ ବସିଥିଲ । ତୁମେ କାହିଁକି ମତେ ମନା କଲ ? ତାକୁ ନେଇ ଏତେ ଧନ ନିଜ ଘରେ ରଖିଲ ? ମନେ ନାହିଁ ? କହୁଥିଲ ଝଗ ଏଠାରେ କିଛି ଧନ ଅଛି ବୋଲି ! ତିନି ବର୍ଷ ପରେ ଆଜି ତ ସେଇ ଯୋଗ ଜୁଟିଲା । ଆଉ କେତେବେ, ତୁଆଡ଼େ ଯିବ ବୋଲି କହୁଛ କାହିଁକି ?"

"ସେ କଥା ସତ ଯେ, କେବେ କଣ କ—"

"ଆଉ କେତେବେ କଣ ? ମୁଁ ତା' ହେଲେ ବା ଏକୁଟିଆ ଏଡ଼େ ଘରଟାରେ ରହିବ କାହିଁକି ? ତୁମେ ଆଉ ମତେ କୌତୂହଳ ନବାକୁ ମନା କରିବ କାହିଁକି ?"

"ଆରେ ତୁ ବୁଝି ପାରୁନୁ । ମାଇପେ ପିଲାଏ ସମସ୍ତେ ଏଠି ରହିଲେ ଲୋକେ କଣ କହିବେ ? ଗାଁକୁ ଗାଁ ଲାଗିଚି ପରା ।"

"ଏଁ ମଜା ମୋତେ ଖାଲି କଣ୍ଢେଇବାକୁ ତୁମେ କହୁଚ ଭାଇ । ଯେବେ କଣ ବା କଥାକୁ ଯେବେ ଖାତର କରୁଥିଲ ତା' ହେଲେ ନିଜ ଘରଟାକୁ ଗୁଡ଼ି ଆସିଲ କାହିଁକି ?"

ସେ ଧନ ଗୌରଙ୍କ ଖୁସି ହୋଇ ହାସବୋଉକୁ ବରଜୁ କହୁଥିବାର ଶୁଣିଲା, "ଏଠାରୁ ତ ବାହାରିଯାଇ ହେଉ ନାହିଁ । କଣ କରିବା ?"

ଗୌରଙ୍କ ଆଗଟାରେ ବରଜୁ ଏଭଳି ପଣ୍ଡରବା ହାସ-ବୋଉକୁ ଅଡ଼ୁଆ ଲାଗୁଥାଏ । ସେ କହିଲା, "ମୁଁ କଣ ତମକୁ ଜଗର

କହୁଛ କ ଆଉ କାହିଁ ଯିବାକୁ ?" ତା ପରେ ଗୌରାଙ୍ଗଙ୍କୁ ଚାହିଁ କହିଲେ, "ନଷ୍ଟ ସନ୍ନ୍ୟାସ ସମ୍ଭବକି ! ଏଣିକି ଟଳିବେ ମନ ଭୁଟିଲ ?"

ଗୌରାଙ୍ଗ କହିଲେ, "ସେମିତି କଥା ମତେ ତମେ କହିବ ନି ଭାଉଜ ! କିଏ କାହାକୁ ସନ୍ନ୍ୟାସେ ଦେଲା ? ମୁଁ ଜାଣୁଛି, ତମେ ସବୁ ଆସି ତ ମତେ ଠେଲିଛ ସନ୍ନ୍ୟାସର ।"

ବରଜ ତାରବୋଉକୁ କହିଲେ, "ସାର ତ ଦେଖ ! କୁଆଡ଼େ ଯିବ, କଣ କରିବ କିଛି ସ୍ଥିର ହେବ ସମ୍ଭବ୍ୟ ନାହିଁ । ଅରକ୍ଷିତକୁ ଦେଇବ ସାହା । ବାଟ ଘ' କୋଣରେ ତମ ପାଇଁ ଘରଦୁଆର ସଜିଲ ହୋଇ ରହିଛ—ସେ କଥା କଣ ଜାଣିଥିଲ ?"

"କାହିଁକି ନ ଜାଣିବ ମ ! ଗଙ୍ଗାର ଭେଳେ ଥିଲ ତାଙ୍କ ଘରକୁ ଡାକିଚନ୍ତି । ତମକୁ ଯିବା ଅସାଧ୍ୟ ମାଉପଡ଼ୁଛି ଯେ ଏ ଘରେ ରହିବ ନ, ସେ ଘରେ ରହିବ ନ ବୋଲି ଫୁଲୁକୁଟି ଉଆଁ ମାରୁଛ । ମତେ କଣ ରହିବାକୁ ଘର ମିଳୁନ କି ?"

× × × ×

ଗୌରାଙ୍ଗ ମନ ଖୁସିରେ ଠାକୁରଙ୍କ ପାଖେ ଭଲ କରି ଗୋଟାଏ ଚୂଡ଼ାଘଷା ଭୋଗ ଦେଲେ । କୃଷ୍ଣୀପାଟୁଆ ଗୋସେଇଁମାନେ ବି ଦେଇକି ସେ ଦିନ ପହଞ୍ଚିଥାନ୍ତି । ଗାଁ ଭିତରୁ ଆଠ ଦଶ ଜଣ ଗେରୁଆପିନ୍ଧା ଭକ୍ତ ଆସି ଜୁଟିଲେ । ହୁଡ଼ୁ ହୁଡ଼ୁ ସାନଟୁଙ୍ଗି ଖଣ୍ଡିକରେ ଗହଳ ଚହଳ ଜମି ଆସିଲା । କିଏ ନଡ଼ିଆ କୋରୁଛି, କିଏ ଚୂଡ଼ା କୁଟୁଛି, ଆଉ କିଏ ପାଣି ବୋହୁଛି ତ କିଏ ପତ୍ରର ପାଇଁ ଧାଉଁଛି ।

ଘଡ଼ି ଦ' ଘଡ଼ିକୁ ସବୁ ଯୋଗାଡ଼ ହୋଇଗଲା । ଜୁଆଁ ଜୁଣ୍ଡ ବସିବା ନାହିଁ । ସମସ୍ତେ ଧାଡ଼ି ହୋଇ ପ୍ରସାଦ ପାଇବାକୁ ପଟ ପକାଇ

ବସିଗଲେ । ମାଧ ସେଠି, ଚେମା ବେହେରା, ଭଗାରି ସାହୁ, ଅପର୍ତ୍ତି ଖେଇ ସବୁଙ୍କ ମୁହଁରେ ଗୋଟାଏ ଚଲମ ବୁଲି ଆସିଲା ।

ଚେମା କହୁଛି, "ଗଣ୍ଡର ଦାଦଙ୍କୁ ମନ ଜାଣି ଫଳ ମିଳୁଛି । ବରଜୁ ପଧାନ ତା' ଘରେ ଗୋଡ଼ ଦେଇଚି କି ନାହିଁ, ଗୁରୁଆଡ଼ ଯେମିତି ହସି ଉଠୁଚି ।"

ମାଧିଆ କହିଲା, "ତା' ବାଣ୍ଡପଟ ଦେଖିଲୁଣି । ମାଟି ହଣା ହେଇଚି ଯେ, କଣ କହିବ ତା' ଗୁଣ । ଏ ଚନ୍ଦ୍ରାବଷା ଭଲ ସେ ମାଟିକୁ ସଉ ହଉ !"

"କାର୍ତ୍ତିକ, ଘର ଭିତର ? ସୋଲଷଠାଏ ପଗ ହଜବ ନାହିଁ ! ଗୁରୁଆଡ଼ ଲଗାପୋଛ ନଚପଡ଼ ।"

ତଳ ଅଗଣାକୁ ଦଉଡ଼ି ଆସି ଗୌରୀଙ୍କ ଡାକିଲା, "ଭାଉଜ-ବୋଉ, ଭାଉଜବୋଉ !"

"କଣ' କ ?"—ହାଣ୍ଡିଶାଳ ଭିତରୁ ହାସବୋଉ ଜବାବ ଦେଲା ।

"ବାହାରକୁ ଟିକିଏ ଆସ ଭଲ । କଣ ଏମିତି ଗନ୍ଧୁଟ କ ?"

"ରନ୍ଧଥା, ଭାତ ହାଣ୍ଡି ଟା ଜଳୁଛି ପଶୁଚି ପର ।" ଆଖି ମଳିଚ ହାସବୋଉ ପଦାକୁ ବାହାରି କହିଲା, "କଣ ହେଲା କି ?" କାଇଁକି ଆଜ ଭାରି ଖୁସି ।"

"ତମେ ଆଗ କଣ ଖାଇବାକୁ ଦବ କୁହ ?" ମୁରୁକି ହସି ହାସବୋଉ କହିଲା, "ଖାଇବାକୁ ଦେବ କଣ ମ ? ଘରେ ତ ଯାହା ଅଛି ଖାଇବ ।"

"ନାଚ ହୋଇଛୁ, ନାଚ !—ବୁଝିଲ ? ହାସ ଘରୁ ମଣିଷ ଆସିଚି । ପଣ୍ଡୁ ଆଉ ସଜିଲ କର ।" ଗୌରୀର ଯେମିତି କଜର ନାଚ ହେଉଚି, ସେମିତି ତା' କଥାଗୁଡ଼ା ଶୁଣାଗଲା ।

ହାସବୋଉର ଗୁଣ୍ଡ ଉଲୁସିଉଠିଲା । କଣ କହିବ କିଛି ତାକୁ ପଇଟିଲା ନାହିଁ ।

ସୁଜଳ, ଖାଜା, ମୁଗ, ଚଣା, ବରଡ଼ ଆଣି ଗୌରୀ ଗୌଣି ଗୌଣି କରି ଭୁଟେଇଲା, "ନଅ ଏଥର, ସାଇଟି ବୋଉକୁ ଡକାଇ ସବୁ ଭଜା ଭଜ କର ।"

"ଆଜଠୁଁ କାଇଁକି ଭଜାଭଜ ହବ ମ ।"

"କାଲି ତ ପଞ୍ଚୁଆତ କୋର୍ଟ ଯିବ । ଆଜି ଦଶଦିନ ଆଜକୁ ଦିନ ? ପରଦିନ ଘଣ୍ଟିରୁ ପୁଅ ହେଲାଣି, ଆଜି ସଞ୍ଜକୁ ସେ ବାହାନ ଦଉଚି । ତମକୁ ତ ଘର ନ ମିଳିଲା ପରି ଅସଲ ଚୋଠା ଘରୁଟାରେ ଝିଅଟି ହେଲା । ପୁଅଟାଏ ହେଲେ ସେ ମୁକ୍ତି ବ ? ଝିଅଟାଏ ଲୁଗ କାମ ବନ୍ଦ ହୋଇଯିବ ଯେ ! ବାଛି ବାଛି କରି କୁଆଡ଼ୁ କୋଉଟାଏ ମୁଣ୍ଡକୁଟି ବୁଢ଼ୀ ହାତରେ ତିନି ଦିନରେ ବାହାନ ଘଟେଇଚି । ଲଇଖଣ ସ୍ୱାଇଁକୁ ମୁଁ ଜାଣେ ନା ? ତା ନାଁ ଧରିଲେ ପତ୍ର ଖାଇବାକୁ ମିଳିବ ନାହିଁ ।"

ନଟେଜ ସମୁଦିର ସ୍ନେଠାଗିରିଆ କଥାଟେ ହାସ୍ୟବୋଲ ହସି ହସି କହିଲା, "ତାର ସେ ସ୍ନେଠା ହେଲେ ଆମର କଣ ? ଆମ ଝିଅ ତ ସୁଖରେ ରହିଲେ ହେଲା । ଧାନ ମୁଗ କଥା କେଣିକି ଥାଉ, ଖାଲି କୁଆଡ଼େ ସୋରିଷ ପାଞ୍ଚ ଭରଣ ସେ ଅମଳ କରେ । ଘରେ ସବୁ ଜିନିଷ ଏମିତି ସାଇତି ରଖିଚି ଯେ, ଖଣ୍ଡ ବ'ପଦରେ ଦଶଜଣ କୁଣିଆଁ ହାବୁଡ଼ିଗଲେ ସମସ୍ତଙ୍କୁ ଚଉସ୍ଥ କରି ଗୁଣ୍ଡ ଦେବ ।"

"ହଁ, ତା ଘରେ କୁଣିଆଁ ଖାଲି କୁଟେଇ ହୋଇ ପଡ଼ୁଛନ୍ତି । ବରକୁ ଭାଇ ଜଣେ, ତା' ସମୁଦି ଲଇଖଣ ସ୍ୱାଇଁ ଜଣେ— କଉଁଗୁଣକୁ ସବୁ ଭଲ ।"

ବରକୁ ମହାନ୍ତି କହିଲା, "ହଇରେ ଗୋବିନ୍ଦ, ସେ ଡାଳିମୂଳ ବିଲ ଖଣ୍ଡ ରୁଆ ହେଉଥିଲା ପରା ! କାଲି ହାତିଟେ ସେଥିରୁ ଅଧା ଅଧି ଗୋରୁ ଚରି ଯାଇଛନ୍ତି ।"

ଗୋବିନ୍ଦ ସେଥିକି କାନ ଦେଲା ନାହିଁ । କହିଲା, "ଭାଇ, ହାରାର ପୁଅଟିଏ ହବାକୁ ତିନି ଦିନ ହେଲାଣି । ଲଇଖଣ ସ୍ୱାଇଁ ଆଜି

ସଭିଙ୍କ ଖବର ଦଉଛ ।" ହାବୁଡୋଲ ପରେ ସେଥିରେ ଯୋଡ଼ ଦେଲ, "ଏଡ଼କ ସ୍କେଠା ସେ । ମଣିଷଟାଏ ପର ମୂର୍ଚ୍ଛି ବ ନାହିଁ ।"

ବରଜୁ ଛିଗୁଳେଇ କହିଲ, "ଆଃ, ସେ ସ୍କେଠା । ସମସ୍ତେ ବାଘ ଭଲ ବଆଳ୍ଲି । ହାରର ପୁଅ ହେଲ ବୋଲି ଗାଲୁ ଭ ଆଉ ସଭରେ କଦ ହୁଅନ୍ତା ନାହିଁ । ସୁଖଆନେ୍ଦ ଖବର ଦେଇ ଜେଙ୍ଗୁରା ପିଟନ୍ତା ! ଭାବିକ ହାରର ପୁଅ ହେଲ ବୋଲି ଦୁନିଆଯାକ ଖୁସିରେ ଡ଼ଆଁ ମାରନ୍ତେ ? ଆଉ କାହାର ପୁଅ ହେଉନ୍ତ ନାଇ ନା କଣ ?" ତା'ପରେ ପଞ୍ଚୁଆଡ ସରଞ୍ଜାମକୁ ଖୁନ୍ଟି ସେ ଟିକଏ ଭାବା ହୋଇଗଲ, "ଏସବୁ ଏତେ ଭଲଣ ଗଦା ହେଲଣି ? ଗଞ୍ଚୁଆଡ ହୋଟ୍ ଗ୍ରସ୍ତ ! ତମକୁ ସବୁ ଲାଜ ସଙ୍କମ ନାହିଁ ନା କଣ ?"

ହାବୁଡୋଲ ଆଉକୁ ମୁନ୍ହକ ଫୁସି ଦେଇ ଗୌରାଙ୍କ ସେଠାରୁ ଖସି ଗଲ । ହାବୁଡୋଲ ଟିକଏ ଡବଲ ହୋଇ କହିଲ, "ଗୌର ନଜ ଘୁଏଁ ପର ସବୁ ଆଣି ଥୋଇଚନ୍ତି ।"

"ହଉ, ସେଥିନ୍ତୁ ବାରପଣା କାଢ଼ି ରଖିଦଅ । ଗୌରଘର ଜନଷ ବୋଲି କଣ ଶସ୍ତା ହେଉଛ ।"

× × × ×

ଗୌରଙ୍କ ଘରେ ଆସି ରହିବା ଦନୁ କାହାରୁ ହେଲେ ଅସୁବିଧା ନାହିଁ ସିନା, ତେବେ ହାବୁଡୋଲ ମନଟା ସବୁବେଳେ କମିତ ଅଡୁଆ ଲାଗୁଥାଏ । କେତେ ଦନ ଏମିତ ସମସ୍ତେ ଏଠାରେ ରହିବେ ! କଏ କାହା ଘରେ ଏଭଳ ରହିଛ ଭଲ ? ପରସ୍ପରକ ପରସ୍ପରକ ହୋଇ ସେ ବରଜୁକୁ ଭରସି ପାରୁ ନ ଥାଏ । ତା' ଇଚ୍ଛା ତ ସେ ଯାହା କରୁଛ । ଇମରେ ପଡ଼ ପରୁଷ୍ଟି ଲାଭ କଣ ?

ଆଜ ଝିଙ୍କଏ ସୁବଧା ଦେଖି କହିଲା, "ଆମେ ଆଜ କୁଆଡ଼େ ଯିବା—ନା ଏଇଠି ରହିଥିବା ମ ?"

"କାଇଁକ, ଘଉସ୍ପ କଣ ଚଢ଼ ଦଉଚ କ ?"

"ନାଇଁମ, ସେ କଥା ନୁହେ ଯେ, ସେ ସିନା ଭଲ ମଣିଷ ହୋଇ ଆମକୁ ଦୟା କରି କୁଆଡ଼େ ଗୁଡ଼୍ ନାହାନ୍ତି; ତେବେ ଆମର ତ ପୁଣି ବସ୍ତୁଣବାକୁ ଅଛୁ ।"

"ହଉ, ଏତେ ସଙ୍କଳ ଯସ୍ତିରବାକୁ ତମକୁ କେଜ୍ଜ କହୁ ନାହିଁ ।"

"ସହଳ ଉଠୁର କଣ ମ । କେକେ କଣ କହୁଚନ୍ତି—ଭଲ ?"

"କଣ କହୁଚନ୍ତି ?" ବଉଜ ନ ଶୁଣିଲା ପରି ପଚ୍ଛଲା ।

"ତମେ ତ ବାହାରେ ବାହାରେ ରହିଲ, ସେ କଥା କାହିଁକ ଶୁଣିବ । ସୁଲମା ଗପ କହୁଥିଲା—"

ବଉଜ ଆଉ ତାକୁ କୁହାଇ ନ ଦେଇ କହିଲା, "ସୁଲମା ଯାହା କହୁଥିଲା ତୁମେ ଶୁଣ । ମତେ ସେ ସବୁ ଶୁଣିବାକୁ ବେଳ ନାହିଁ । ଯେତେଦିନ ଏଠାରେ ଅଛ, ନିଜ ଘରଭଳି ଚଳ । ତମେ ତ ଏକା ହୋଇ କେଉଁଠି ରହୁନ କି କୁଆଡ଼େ ଯାଉ ନ । ଯୁଆଡ଼େ ଯିବ, ମୋ ସାଥିରେ । ଆଉ ତେବେ ଡର କାହିଁକି ? ସବୁବେଳେ ଏମିତି ଅଥୟ ହେଲେ ତ ଚଳିବ ନ !"

ଦାମ, ମୋଟ ବାନ୍ଧିରେ ଖେଳୁଥିଲେ । ହାସର ପୁଅ ହେବା ଖବର ଗୋଉଙ୍କଠାରୁ ଶୁଣିପକେଇ ଦୌଡ଼ି ଆସିଲେ । ଦାମ ଆଗ କରି ବୋଉକୁ କହିବାପାଇଁ ମୋଟକୁ ପଛରେ ପକାଇ ଧାଇଁ

ଆସୁ ଆସୁ ଢାହାଡ ଭଳେ ପଡ଼ିଗଲା । ସାଙ୍ଗେ ସାଙ୍ଗେ ଉଠିପଡ଼ି କହିଲା, "ବୋଉଲୋ, ଅପାର ପୁଅ ହୋଇଛି ।"

ପୁଅକୁ ଚାଖେଇ ଅନେଇ ହାଡ଼ବୋଉ କହିଲା, "ହଁ, ଚଷୁଆଣ୍ତ ଦେବାଙ୍କ ଯିବ । ତୁ ତା'ସାଥିରେ ଯିବୁ । ଭଣଜାକୁ ଗୋଡ଼ରେ ଶୁଆଇ ଦଉଡ଼ ବଳାବୁ ।"

ବାମ ମନ୍ତୁରିଲା, "ସେ ମୋର କଣ ହେବ ?"

—"ସେ ହବ ତୋର ଭଣଜା, ତୁ ତାର ମାମୁଁ ।"

—"ସେ ମତେ କଣ ମାମୁଁ ଡାକିବ ?"

—"ହଁ, ବଡ଼ ହେଲେ ମାମୁଁ ମାମୁଁ ବୋଲି ପଛରେ ଗୋଡ଼େଇବ ।"

ମୋଟ ଓ ବରଜୁର ଗୋଡ଼ ଦୁଇଟାକୁ କୁଣ୍ଢେଇ କହିଲା, "ବାପା, ମୁଁ ଅପା ଘରକୁ ଯିବ ।"

ବଇଜୁ ତାକୁ ଗୁଣ୍ଡି ଉପରକୁ ଉଠାଇ ନେଲା । "ହଁ, ତୁ ଯିବୁ ନ, ବାମ କଣ ଏକା ଯିବ ?"

ହାଡ଼ବୋଉ ବରଜୁକୁ କହିଲା, "ନାତି ଏକୋଇଶିଆକୁ ତାର ପାଇଁକ ଖଣ୍ଡେ ଶାଢ଼ୀ ଯିବ । କେତେଦିନୁଁ କନ୍ଥା ତା'ଘରକୁ ଯାଇ ନାହିଁ । ଆଜି ତା' ପୁଅ ପାଇଁ ରୁପାଖଡ଼ୁ, ରୁପା ଅଣ୍ଟାସୂତାଟିଏ ତ ଯିବ । ପୋତୁଆଁ ପୁଅ ନା ?"

—"ହଁ ଯିବ, ଯିବନି କାହିଁକି ।" ତେବେ ସେଥିପାଇଁ ଟଙ୍କା କେଉଁଠୁଁ ଆସିବ, ବରଜୁ ସେ କଥା ଭାବି ନ ଥିଲା । କାହିଁକି ଭାବିବ, ପଞ୍ଚୁଆଣ୍ତ ବୋଟ୍ଟ କଥା କଣ ସେ ଭାବିଥିଲା ? ଘରୁ ବାହାରି ଆସିଲା-ବେଳେ ତା ଅଣ୍ଟାରେ ଯେ କାଣିକଉଡ଼ିଟାଏ ବି ନ ଥିଲା । ସେ କଥା ହେଲେ ଭାବିଥିଲା ? ଗୌରାଙ୍ଗ ଘରେ ରହିବ କଣ ଭାବିଥିଲା ?

ସ୍ୱାମୀର ମୁହଁ ଟିକଏ ଶୁଖି ଆସିଲାଭଳି ହାସ୍ୟବୋଉଙ୍କୁ ଲାଗିଲା । ସେ କଥା ଜାଣିଲା ପରି ବରଜୁ ନିଜର ଶୁଖିଲା ମୁହଁଟାକୁ ହସରେ ଘୋଡ଼ାଇ କହିଲା, "ମୋ ବାନାପାଣି ତାହା ଘରେ, ମୁଁ ଯାଇଥିଲି ବାହାଘରେ; ଅସୁବେଳେ ଅସୁ ବସିବ ଜାଣୁଚ ତମେ ।"

ହାସ୍ୟବୋଉ କହିଲା, "ହଉ, ଖଣ୍ଡୁ ପ୍ରଣାସୂତା ପଛେ ଥାଉ, ମୁଁ ଯୁଆଡ଼ୁ ହେଲେ ଚଳେଇ ଦେବି । ଖାଲି ଶାଢ଼ୀ ଖଣ୍ଡକ ତମ ଲାଗ ।"

"ଭଗବଣ୍ଣା ଠିକ୍ ହେଲା ଯେ, ତମେ ଭଲ ଖଣ୍ଡୁ ପ୍ରଣାସୂତା କେଉଁଠୁ ଦେବ, କହିଲ ?"

"ଜାହିଁକି, ମୋ ପାଖେ କଣ ରେଜାରେଜି ରୁପା ଟିକଏ ନାହିଁ ? ବଣିଆକୁ ଦେଲେ ଜାଲିକି କରି ଦେବ ଯେ, ତମେ ଖାଲି ଖଣ୍ଡେ ଶାଢ଼ୀ ଆଣିଲ ।"

ଅପା ପାଇଁ ନୂଆ ଶାଢ଼ୀ ଯିବା କଥା ଶୁଣି ଦାମ ମୋଷ ଦୁହିଁକି ଦୁହେଁ ଲଗେଇଲେ ଯେ, ତାଙ୍କର ବି ଖଣ୍ଡେ ଲେଖାଁ ଶାଢ଼ୀ ଦରକାର । ହାସ୍ୟବୋଉ ଦାମକୁ କହିଲା, "ତୁ ଅଣ୍ଡିରପୁଅ, ତୋର ଶାଢ଼ୀ କଣ ହବ କି ରେ ! ତୁ ତ ବଳେ ଭଉଣୀ ଘରୁ ନୂଆଲୁଗା ପିନ୍ଧିକରି ଆସିବୁ ।"

ମୋଷ ବରଜୁର ଗାଲ ଚପି କାନ ଝିଙ୍କି ଯେତେବେଳେ ନୂଆ ଶାଢ଼ୀପାଇଁ ଅଳି କଲା, ସେ ଖାଲି ଝିଅ ମୁହଁକୁ ବଲବଲ କରି ଚାହିଁଲା । ମୋଷକୁ ସେ କଣ କହି ବୁଝେଇବ । ଶାଢ଼ୀ ! ଶାଢ଼ୀ ଖଣ୍ଡେ ଆସିବ କୁଆଡ଼ୁ ! ହାସ୍ୟପାଇଁ ତ ଶାଢ଼ୀ ଖଣ୍ଡେ କହାଣ ନ ହେଲେ ନ ଚଳେ । ମୋଷ ରଡ଼ ଧରିଲା, "ଅପା ନୂଆ ଶାଢ଼ୀ ପିନ୍ଧିବ, ଦାମ ପିନ୍ଧିବ, ମୁଁ କାହିଁକି ପିନ୍ଧିବ ନି ।" ସେ ବାପକୁ ଶାଢ଼ୀ ଶାଢ଼ୀ

ବୋଲି ଅଥପୂ କଣ ପଚାରିଲା । ବରଜୁ ହାସ୍ୟପାଇଁ ଶାଢ଼ୀ ଦବା କଥା ଭାବିବ କି ମୋନ୍ତି ପାଇଁ ? ସାନ ପିଲାଟାର ଅକାରଣ ଅଝଟ ପଣିଆରେ, ପୁଣି ନିଜ ପାଖେ ପଇସା ନ ଥିବାରେ ତା ମନଟା ଚିଡ଼ିଗଲା । ସେ ଏତେ ଜୋରରେ ମୋନ୍ତିକୁ ଚଟେଇ କସିଦେଲା ଯେ, ପିଲାଟି ଦନ୍ତେଯାକେ ଚକ୍ର ଭଳି ପାଣିଲା ନାହିଁ କି କାନ୍ଦି ପାରିଲା ନାହିଁ । ହାସ୍ୟବୋଉ ଦାମକୁ ଓହ୍ଲେଇ ଦେଇ ମୋନ୍ତିକୁ ଯାଇ ଧରି ଛକେଇ ଚିତ୍କାର କଲା, "କଣ କଲ ମୋ ଝିଅକୁ ।"

ହଠାତ୍ ବରଜୁର ଚେତା ଆସିଲା । ଆଗରେ ତାର ହାସ୍ୟବୋଉ, ମୋନ୍ତି ଆଉ ଦାମ । ତାଙ୍କ ପାଖରେ ସେ କେଉଁ ସାନ ହୋଇ ପଡ଼ୁଛି । କ୍ରୋଧର ପରି ସେଠାରୁ ଏକାବେଳକେ ସେ ଚାଲିଗଲା । କାହିଁକି ସେ ମୋନ୍ତିକୁ ମାରିଲା ! ତାର ଦୋଷ କଣ ? ସେଇଟା ତ ଅବୋଧ ପିଲା, ବୁଝେଇ ଦେଲେ ବୁଝିଯିବ । ହାସ୍ୟ ପାଇଁ ନ କିଣି ତା ଶାଶୂ ଶ୍ୱଶୁରଙ୍କୁ କି ତାକୁ ଅବା ତା ମା'କୁ ଯେତେ ବୁଝାଇଲେ କଣ ଜଣେ କେହି ବୁଝିବ ? ଜଣେ ହେଲେ କେହି ବୁଝିବ କି ବରଜୁ କାହିଁକି ଶାଢ଼ୀ ଖଣ୍ଡେ କିଣି ପାରୁନାହିଁ ? କେତେ ବୁଢ଼ା, କେତେ ପୁରୁଖା ଲୋକ ତ ଦୁନିଆଟାରେ ଭରି—କିଏ ଭଲ ବୁଝେ ! ଆଠବର୍ଷର ଝିଅ ମୋନ୍ତି, ସେ ନ ବୁଝିଲା ବୋଲି ତାର କଣ ଦୋଷ ? ତାହାଠୁ ବଡ଼ ଭଉଣୀ ହାସ୍ୟ ତ ପୁଅର ମା ହୋଇ ବୁଝୁନାହିଁ । ସେଇ ହସର ମା ଆଜି ଡଙ୍ଗବୁଢ଼ୀ ହୋଇ ନାତି ଦେଖିଲାଣି—ସେ ବୁଝୁନାହିଁ । ମୋନ୍ତି ନ ବୁଝିଲା ବୋଲି ତା'ର କି କସୁର ?

ବରଜୁ ଦେଖିଲା, ଦୋଷ ଆଉ କାହାରି ନୁହେଁ, ଦୋଷ ତାରି ନିଜର । ଘର ସଂସାର କରି ଏତେ ବେପରୁଆ ହେଲେ ଚଳିବ



ସେ ଏତେ ଜୋରରେ···କାନ୍ଦ ପାରିଲେନ । [ ପୃଷ୍ଠା ୩୦

କେମନ୍ତ ? ଅକାରଣରେ ସେ ଆଜ ନିଜ ଜନ୍ମକଲା ଝିଅଟିକୁ ଯେ ଦଣ୍ଡ ଦେଲ ସେ ଦୋଷର ପ୍ରାୟଶ୍ଚିତ୍ତ କାହିଁ ?

× × × ×

ଗୌରଙ୍ଗ ଫେରିଆସି ପୁଣି ହାଉବୋଉକୁ ଡାକିଲା । ହାତରେ ତାହାର ତିନଟଙ୍କର ତିନଖଣ୍ଡ ଶାଢ଼ୀ । ମୋତି ସେତେବେଳକୁ ଉଠିଗଲଣି । ଦଉଡ଼ି ଯାଇ ସେ ଆଗ ନାଲି ଶାଢ଼ୀଟା ଧରି ପକେଇ କହିଲା, "ଏ ଖଣ୍ଡ ମୁଁ ନେବ ।"

ଗୌରଙ୍ଗ ହସି ହସି କହିଲା, "ଆରେ ମା, ସେ ଗୁଣ୍ଡା ବଡ଼ ଶାଢ଼ୀ, ତୋ ପାଇଁ ଖଣ୍ଡେ ସାନ ଶାଢ଼ୀ ଆଣିବା ।"

ମୋତି ସେ କଥା ନ ଶୁଣି ଶାଢ଼ୀଖଣ୍ଡକୁ ଆଗ ନିଜ ଦେହରେ ଜଣ୍ଡି ପକେଇଲା—"ନାଇଁ, ମତେ ତ ଏଇଖଣ୍ଡ ଠିକ୍ ହେବ ।"

ହାଉବୋଉ ଗୌରଙ୍ଗକୁ ଆଖି ମାରି ବୁଝେଇଦେଲା । "ହଉ, ତୁ ସେଇ ଖଣ୍ଡ ନବୁ ।"

ଶାଢ଼ୀ ଖଣ୍ଡି ● ହାତରେ ଯାକି ପକେଇ ମୋତି ବାଣ୍ଡପଟକୁ ଦଉଡ଼ିଗଲା । ବରଜୁ ଗୁହାଳ ଘରେ ଗୋରୁମୁହାଁ ଦେଖୁଥିଲା । ଗୋରୁର ଧଳା ଦାମୁଡ଼ିହଳକ ନ ଖାଇ ହାଡ଼ମାଳ ହୋଇ ପଡ଼ିଥିଲେ । ବରଜୁ ଆସିବାଦିନୁଁ ତାଙ୍କୁ ଟିକେ ସ୍ୱର୍ଗ ସନ୍ଧୁଲଣି । କଏ କାଲୁଆ ପିଠିଁ ନାହିଁ ତାକୁ ଉଷୁମ ହଆସିବ, କାହାକୁ ବେଣି କରି ଗଣ୍ଡାଏ କୁଡ଼ୁଚ କି ମୁଗଶ୍ଲେଷା ହଆସିବ । କାହା ପିଠିରେ ହାତ ମାରି ମୁଣ୍ଡ ଆଉଁସି ସେ ଏହି ପଶୁଗୁଡ଼ିକର ଯତ୍ନ ନେଉଛି । ମୋତିକୁ ଦାଣ୍ଡରୁ ଦେଖି ସେ କଅଁଳେଇ ଡାକିଲା, "ମୋତି କଟ୍ଲି, ଆସିଲୁ ମା' ଏଠିକି ।"

ମୋତି ଆଜ ବାପକୁ ବାଗରେ ପାଇ ଅଭିମାନରେ କହିଲା, "କାହିଁକି, ତମେ ମତେ ମାରିବ ।"

"ହଉ ତୁ ଆସିଲୁ । ମୋର ସେ ସବୁ ଦୋଷ ହୋଇଛି" କହି ବରଜୁ ନିଜେ ତା'ପାଖକୁ ଯାଇଗଲା । "ଆରେ ଏ ତ କି ସୁନ୍ଦର ଶାଢ଼ୀ ଖଣ୍ଡେ—କିଏ ଦେଲା କି ? ଦେଖି, ଦେଖି !"

ଲୁଗାକୁ ପଛଆଡ଼କୁ ଧରି ମୋତି ଦୁଷ୍ଟାମି କରି କହିଲା, "ନା, ତମେ କଣ ଦେଇଚ କି ? ମୁଁ ନ ଦେଖେଇବି ?"

ବରଜୁ ଝିଅକୁ ଧରି କୋଳରେ ବସାଇଲା । କାହିଁକି କେଜାଣି ତାର ଦୋହଳା ବ'ଟା ଢଳ ଢଳ ହୋଇ ମୋତି ମୁଣ୍ଡରେ ଦି ଟୋପା ଲୁହ ଖସି ପଡ଼ିଲା । ଗୌରୀ ! ଗୌରୀର ଋଣ ସେ କେଉଁ କାଳରେ ଶୁଝିବ !

× × × ×

ଡାକ୍ତରବାବୁ ଗୌରୀକୁ ପଚାରିଲେ, "ଏ ଶାଢ଼ୀ ଖଣ୍ଡକ କେତେ ଲେଖାଁ ପଡ଼ିଲା ।"

—"ବେଶି କିଛି ନୁହେଁ—ଅଢ଼େଇ ଟଙ୍କା ମାତ୍ର । ଏଠାରେ କଣ ସହର ବଜାର ଅଛି ଯେ ଆଉ ଭଲ ଶାଢ଼ୀ ମିଳିବ । କାରଣ ସାଙ୍ଗ ଦୋକାନଯାକ ଖୋଜି ଖୋଜି ଏଇ ତିନିଖଣ୍ଡ ଭଲ ଶାଢ଼ୀ ବାହାର କଲି । କାଠ ଉନ ପଦା ଆଉ ଟିକିଏ ଭଲ ମିଳିଥାନ୍ତା । ସେ ତ ଆଉରି ଦୂର ବନ ଅଛି । ଆମ କାମ ଚଳନ୍ତା ନାହିଁ ।"

"ଶାଢ଼ୀ କଥା ତୁମକୁ ତ କେହି କହି ନ ଥିଲା । ତମର ପୁଣି ଏତେ ଘରକରଣା ବୁଦ୍ଧି !"

"କାହିଁକି ମୁଁ କଣ କିଛି ଜାଣି ନାହିଁ । ଦେଖେ କଣ କି, ପାଟଣାସାହି ଅଢ଼େ ବୁଲବୁଲି ହେଇ ଫେରିବେଳେ ଲୁଗା ଦୋକାନକୁ ଦେଖି ହଠାତ୍ କଥା ମନେ ପଡ଼ିଗଲା । ତମର ପସନ୍ଦ ହେବ କି ନାହିଁ, ଯାହା ପାଇଲି ତିନି ଖଣ୍ଡ କିଣି ଆସିଲି ।"

"ହାବୁପାଇଁ ତ ଖଣ୍ଡେ ଦରକାର । ମୋତେ ଯେଉଁ ଖଣ୍ଡିକ ନେଇଛ, ସେଇଖଣ୍ଡ ପଠେଇବ । ବାକି ଏ ଦୁ'ଖଣ୍ଡ ଫେରେଇ ଦେଇ ଆସ ।"

"ନାହିଁ, ମୋତେ ଯେଉଁ ଶାଢ଼ୀଟା ଧରିଲଣି, ସେ ଖଣ୍ଡ ଘରେ ଥାଉ । ବାକି ଏଥିରୁ ଖଣ୍ଡେ ରଖ ହାବୁପାଇଁ । ଆଚ୍ଛା ହାବୁଜବୋଉ, ହାବୁପାଇଁ ସିନା ଶାଢ଼ୀଟା ଯିବ, ନାତିପାଇଁ ତ ଖଣ୍ଡୁ ଅଣ୍ଟାସୂତା ନ ଗଲେ ନ ଚଳେ ! ତମେ ସେ ଟୁଙ୍ଗିଘର ପେଟରାଟାକୁ ଫିଟାଇ ଦେଖିଲ । କଞ୍ଜିଟା ତାହାରି ଉପର କାନ୍ଥକୁସରେ ଥୁଆ ହୋଇଛି । ସେଇ ପେଟରାଟାରେ ଘରଯାକର ସବୁ ରୁପା ସୁନା ଅଛି । ମତେ ଅବା ପୁଚ୍ଛୁଛ କାହିଁ ଯେ ସେଗୁଡ଼ା ଫିଟେଇ ଦେଖିବ । ତମେ ଦେଖ, ତା ଭିତରୁ ଯାହା ଦରକାର, ପଠେଇ ଦେଲେ ଚଳିଯିବ ।"

ହାବୁବୋଉ ମୁହଁକୁ ଚାହିଁଦେଇ ସେ ପୁଣି କହିଲା, "ସେଗୁଡ଼ା ଆଉ କଣ ହବ କହିଲ ? ସେ ପେଟରାଟା ତ ମତେ ଖାଲି ବିଷପରି ଦିଶୁଛି । ତମେ ଆସ, ଫିଟେଇ ଦେଖିବା ।"

ହାବୁବୋଉକୁ ପଦେ ହେଲେ କଥା କହିବାକୁ ନ ଦେଇ ସେ ତାକୁ ଘର ଭିତରକୁ ଡାକି ନେଲା । ସ୍ତ୍ରୀର ଏତେ ସହଜରେ ବନ୍ଦନୂର ପରିବାରକୁ ଆପଣାର କରି ପକାଇବା ଶୁଣି ନିଜେ ତାଙ୍କର ଆପଣାର ହୋଇ ପଡ଼ିଲା ଯେ, ହାବୁବୋଉର ଲୁହ ମଝିରେ ମଝିରେ ହେଜ ରହିଲା ନାହିଁ, ସେ ନିଜ ଘର ଗୁଣ୍ଡି ପରି ଘରେ ଆସି ରହିଛି ।

ହରିପୁର ଗାଁର ସବୁରି ସଙ୍ଗେ ଅଳ୍ପେ ଅଳ୍ପେ ବନ୍ଦନୂର ଚିହ୍ନା ପରିଚୟ ହୋଇଗଲା । ଯେତେବେଳେ ତାକୁ ଜାମରୁ ଟିକିଏ

ତର ମିଳେ, ସେ ତାହା ସ୍ମରଣ ଭିତରେ ପଶି ଆଜ କାହା ପିଣ୍ଡାରେ ବସି ଦି'ପଦ ଦୁଃଖସୁଖ ହୋଇ ଅସେ।

ମଝିରେ ମଝିରେ ତା'ର ଜନ୍ମସ୍ଥାନ ସେହି ସାନ ପଧାନ-ପଡ଼ାଟିର କଥା ମନେପଡ଼ ଯାଉଥାଏ। ପଧାନପଡ଼ାଟି ତ ହରିପୁର ମୌଜାର କେଉଁ କଣରେ ଲୁଚିଯିବ। ତାହାର ପଞ୍ଚ ସାତ କି ଆଠ ଖଣ୍ଡ ପଡ଼ାର ମଣିଷ ଏକା ହରିପୁରରୁ ବାହାରିବେ। ଖଣ୍ଡୁଆ ସାହି, କଣିଆ ସାହି, ବ୍ରାହ୍ମଣ ସାହି, ବଢ଼େଇ ସାହି ବୋଲି ସାତ କି ଆଠ ସାହି। ସେଥିରେ ତନ୍ତୀ, ଗୁଡ଼ିଆ, କମାର, କୁମ୍ଭାର, ତେଲି, ଘାଟର ସବୁ ଜାତିକ ଅଛନ୍ତି। ଏ ଗାଁରେ ଯେମିତି ପଇସାବାଲା ମହାଜନ ଅଛନ୍ତି, ହରି ମିଶ୍ରେ ତାଙ୍କ ଆଗରେ ଛୁଚା ଲୋକ। ଏକ ତ ମଥୁରି ସାହୁ ମହାଜନର ଗୋଟାଏ ଫୁଟ୍କିରେ କେତେ ହରି ମିଶ୍ର ଉଡ଼ିଯିବେ। ଦଶ ବାର ଖଣ୍ଡ ଶଗଡ଼ରେ ଭଡ଼ାର ମାଲ ଗୋଦାମରୁ ମଥୁରି ସାହୁର ଖାଲି ଲୁଣ ବସ୍ତା ଗ୍ଭଲିଥିବାବେଳେ ବଳଦ ବେକ ଘଣ୍ଟିରେ ଗାଁ ଦାଣ୍ଡ ଝଙ୍କୁଳ ପଡ଼ୁଥାଏ। ବଳଦ କଣ ଏମିତି ସେମିତି? ଗୋଟାଏ ଲେଖାଁ ହାତୀ! ତାର ଗୋରୁ ଗାଈଙ୍କ ଖୋରାକରେ ଯାହା ଖରଚ, ହରି ମିଶ୍ରଙ୍କ ବର୍ଷକର ଆୟ ସେଥିକୁ ନଅଣ୍ଟ ପଡ଼ିବ। ଏକା ତ ତାହାର କୋଠାବାଡ଼ି, ବାଗବଗିଚାର ମୂଲରେ ପଧାନପଡ଼ାପରି ତିନି ଖଣ୍ଡ ଗାଁ ସେ କିଣି ନେବ। ଦାନ ଖଇରାତ କଣ କମ୍!

କପାଳେଶ୍ୱର ଠାକୁରଙ୍କ ନାଁରେ ବାଟିଏ ଛତ୍ର ଖଞ୍ଜା। ଯେତେ ଅତିଥି ଅଭ୍ୟାଗତ ଆସିବେ, ସମସ୍ତେ ପ୍ରସାଦ ପାଇବେ। ଚନ୍ଦନ ପୋଖରୀରେ ମାଣବଣ୍ଡି ବସାଇ ପଥର ଘାଟ କରିଛନ୍ତି। ନିମ୍ନ ପ୍ରାଥମିକ ଇସ୍କୁଲ ଘର ପାଇଁ ଜମି ଦେଇଛି। ହେଲେ କଣ ହେବ? ଗାଁଟାରେ ଏତେ ଲୋକ ଥାଇ ସୁଦ୍ଧା ଅଜାଡ଼ରୁ ଇସ୍କୁଲଘର ଝରକାକବାଟି କେତେଖଣ୍ଡ ଅଭାବରେ ଲାଗି ପାରୁ ନାହିଁ। କୁଆ,

ଝୁଙ୍କୁର ଉଣିକେ କୋଣ୍ଟ ଖଣ୍ଡେ ଲେଖାଁ ଖଜୁରି ପଟିରେ ଜଳାଗୁଡ଼ିକ ବନ୍ଦ କରାଯାଇଛି ।

ଇସ୍କୁଲ୍ ମାଷ୍ଟରଙ୍କ ଘର ଏଇ ହରିପୁରରେ । ଲୋକାଲ୍ ବୋର୍ଡ଼ରୁ ଆଠଟି ଟଙ୍କା ଦରମା ମିଳେ । ଗାଁ ଭିତରେ ଘର ବୋଲି ଖୋରାକ ପାଇଁ ସଞ୍ଜା ଆଦାୟ କରିବାକୁ ପଡ଼େ ନାହିଁ । ତାଙ୍କ ଆଗରୁ ଯେ ଥିଲେ, ଘର ପିଛା ଯୋଜନା ଚାଉଳ, ଡାଲି, କାଠ, ତେଲ, ଲୁଣ, ପଢ଼ିବାର ଗୋଟିଏ ଲେଖାଁ ବର୍ଷକର ସଞ୍ଜା ପାଉଥିଲେ । ବ୍ରାହ୍ମଣ ସାନ୍ତରେ ଘର ଘର ବୁଲି ଦ'ବେଳ ଦ'ବଜର ଖାଇ ଆସୁଥିଲେ । ଏ ତ କହୁ ବଡ଼ୁଣା ଗାଁର ଲୋକ ନୁହନ୍ତି ! ନିଜ ବିଲବାଡ଼ି, ଘର ଧନ୍ଦା ବୁଝାସୁଝା କରି ମାସକୁ ମାତ୍ର ଇସ୍କୁଲରୁ ଆଠଟି ଟଙ୍କା ପାଆନ୍ତି । ତାହା ଛଡ଼ା ଆଜ କାହା ଘରୁ କାଉ ଖଣ୍ଡେ, କାଲି କାହା ଘରୁ କଖାରୁଟାଏ, ମୁଗ ପାଏ, କଦଳୀ ଫେଣାଏ କି ଖଡ଼ା ଦି'ବୁଡା ତ ଆଠକାଳ ବାରମାସି ଲାଗିରହିଛି । ଆଉରି ହରିତାଳିକା, ଶ୍ରୀପଞ୍ଚମୀକୁ ଭଲ ହେଉ, ମନ୍ଦ ହେଉ ଦି'ଖଣ୍ଡ ନୂଆ ଲୁଗା, ନଡ଼ିଆ ପଇଡ଼ ଆଠଦଶ ଗଣ୍ଡା ରୋଜଗାର ହୁଏ ।

କାର୍ତ୍ତିକ ମା ବର୍ଷଭିତରେ ଏଇ ପୋଢ଼ଳ ଦିନ ସବୁଠାରୁ ବେଶି ପିଲା ଭେଦା ସୂନ୍ଦା ଦେଇ ଭେଟ ନଡ଼ିଆ ଧରି ଇସ୍କୁଲକୁ ଆସନ୍ତି । ଆଉ ଯେତେବେଳେ ଇସ୍କୁଲ ଇଲାକା ହାକିମମାନେ ଆସନ୍ତି, ସେତେବେଳେ ତିନି ଦିନ ଆଗରୁ ଘର ଘର କରି ମାଷ୍ଟର ଆପଣେ ତାଗିଦା କରି ଦେଉଥାନ୍ତି—ଖବରଦାର, ସେ ଦିନ ଯେମିତି ସମସ୍ତେ ଇସ୍କୁଲ ଆସିବେ ! ଶହେ ପିଲାଙ୍କ ଭିତରୁ ଅନ୍ତତଃରେ ହେଲେ ଏଇ ଦିନଟା ଷାଠିଏ ଜଣ ତ ଆସିବା ଲୋଡ଼ା । ନ ହେଲେ ଇସ୍କୁଲ ଗ୍ରାଣ୍ଟ ରହିବ କିମିତି ? ଏତେ ମଧ୍ୟରୁ କୋଉଏ ଜଣରୁ ବେଶି ପିଲା ନ ହେଲେ କଣ ହେବ ? ମାଷ୍ଟରଙ୍କ ବିଚକ୍ଷଣ ବୁଦ୍ଧିରୁ ସିନା

ଆଜଯାକେ ଗ୍ରାଣ୍ଟ ବନ୍ଦ ହୋଇ ନାହିଁ ! କାଗଜ କଲମରେ ବେଶ ଖର୍ଚ୍ଚ ହେଉଛନ୍ତି; ପିଲା ଯାହା ଆସନ୍ତୁ । କେଉଁ ଦିନ ଷାଠିଏ ସତୁରିରୁ କମ୍ ଗ୍ରୁପ ଉପସ୍ଥିତ ବହିରେ ଲେଖା ହୁଏ ନାହିଁ । ପୁଣି ସବୁ ବର୍ଷ ତ କେତେ ହାକିମମାନେ ପରିଦର୍ଶନ କରିବାକୁ ଆସୁ ନାହାନ୍ତି ! ବର୍ଷକ ଭିତରେ ଖାଲି ଏକ୍ସ ଗୋଟାଏ ଦି'ଟା ଦିନ ଗ୍ରୁପ୍ ଭେଟିକ ପଣ୍ଡିତ କିଏ କୁଣିଆଁ ଘର ଯାଇ, କିଏ ନାଇକରୁ, ବାହୁଡ଼ା ଉତ୍ସବ, କାହାକୁ ତା' ମା ଦି' ମାସର ଛୁଆଁ ପୁଅକୁ ଜଗାଇ ଦେଇ ଗାଧୋଇ ଯାଇ, ଆଉ କାହାର ମା ପାଣି ଭରୁଁ ନାହିଁ ବୋଲି ବାପ ଆସି ଇସ୍କୁଲରୁ ପୁଅକୁ ଡାକି ନେଇ ଚୁଲି ଜାଳିବାକୁ ।

ମାଷ୍ଟର କେତେ ବୋଲି ତାଙ୍କ ନିଜର ତ ପୁଣି ପେଟ ପାଟଣା ଅଛି ! ସେଥିପାଇଁ ଗାଁ ଲୋକଙ୍କ ଆପତ୍ତି ଯେ, ଜନ୍ମେ ନ ଘଟେ । ନୂଆପୁରାଣ ଯେଉଁ ମାଷ୍ଟର ଥିଲେ ସେ ଘର ଘର ବୁଲି ପିଲାଙ୍କୁ ଡାକି ନେଉଥିଲେ । ଗାଁ ମାଷ୍ଟର କେତେ ବୋଲି ଏ କାହାର ଦୁଆର ମାଡ଼ିବେ ନାହିଁ । ଜଣେ ବାବୁ, ପିଲାଗୁଡ଼ାଙ୍କୁ ତମର ତ ଘର ଭିତରେ ଜମାରୁ ଆଟକ ନାହିଁ । କିଏ ଜାମୁକୋଳି ଖାଇବାକୁ ଯାଉଛି ତ କିଏ ମୁଗ ତୁଳି ତୋଳୁଛି, ଆଉ କିଏ ବାଲି ମଝିରେ କଅଁରୁବାରେ ନିଆଁ ଲଗେଇ ଚଳୁଆ ପୋଡ଼ୁଅଛି । କିଏ ପୁଣି ଗାଳି ମାଙ୍କୁଡ଼ ଖେଳ ଖେଳୁଟା ଦେଇ ସବୁ ଶୋଉଛନ୍ତି । ମାଷ୍ଟ୍ରେ ଜଣେ ଗାଁ ଚଉକିଆ ହେଉଛନ୍ତି କି, ଦଶ ବାର ଆଠ ଗୋଟା ବୁଲି ତମ ପିଲାଙ୍କୁ ଡାକୁଥିବେ !

ପ୍ରଗଣି ଜଣେ ଇସ୍କୁଲ ପିଣ୍ଡାରେ ବସି ମାଷ୍ଟରଙ୍କ ବଟୁଆରୁ ଚୂନ ଗୁଣ୍ଡ ନେଇ ଖାଦୁଲି ଉପରେ ମକଚି ମକଚି ଗପ ଆରମ୍ଭ କରନ୍ତି । "ତମେ ସେଗୁଡ଼ାକ ଜାଣିଛି ଶୁଣୁଚ ହେ ମାଷ୍ଟ୍ରେ ! ଦାଉ ବୋଇ

ଏଣେ କଷ୍ଟ ପାଉଥାଏ, ମୁଁ ପୁଅକୁ କହିଲି, ନାହିଁ ରେ ପୁଅ, ତୁ ଆମର ଇସ୍କୁଲକୁ ଯା । ଘରେ କଣ ମଣିଷ ନାହାନ୍ତି କି ? ଶୂଳ ଧରିବା ଲୋକ ତ ଶୂଳ ଧରୁଛୁ । ତେଲ ଟିକିଏ ଲଗା ଖଣ୍ଡେ ଦେବାକୁ ହାତ ମୋର କଣ ପାରିବନି କି ! ତୁ କାହିଁକି ପଢ଼ା ମାରି କରିବୁ ? ହାଡ଼ ମୋର ଚୁଆଁଟାଏ ହେଲେ କଣ ହେବ, ମାଷ୍ଟ୍ରେ ! ବୋଲି ତାର ତିନି ଦିନ ତିନି ରାତି ଶୂଳ ଖାଇଲା । ଜଳ ପାଳ, ହାଣ୍ଡି ଚୂଲି କରୁ ହେଲେ ମୁଁ ଜାଣିଛୁ ? ଖାଲି ଯାହା ଭାତ ଗଣ୍ଡାକ ଗାଳି ଦେବାକୁ ହୁଏ । ଦଶବର୍ଷର ଝିଅଟା । ଭଉ ଢାମକୁ ସେ ପାଇବା କୁଆଡୁ ?"

ଗୁଣ୍ଡି ପଣ ଟିକଏ ପାଟିରେ ପକେଇ ମାଷ୍ଟ୍ରେମଧ୍ୟ ହ'ଟା ଚାଳି ମାରି ହାତଟାକୁ ଝାଡ଼ି ଦିଅନ୍ତି, "ନାହିଁ, ତମେ ଦେଖ ଲୋଥା; ମତେ ତ କହୁ ସେତେ ପାଏ ପାଳ ସଞ୍ଜା ମିନ୍ତି ନାହିଁ କି କାହାର ବାହା ପୁଆଣିରେ ବୋଟେଁ ଲଡ଼େ ଆସୁ ନାହିଁ ଯେ ମୁଁ ଦୁଆର ଦୁଆର ବୁଲିବ । ତମ ପିଲାକୁ ନେଇ ଆଆରେ ବାପା ଯାଆରେ ବାପା କହୁଥିବ । ବର୍ଷକେ ଥରୁଟାଏ ଇସ୍କୁଲ ଘର ଛପର ହେବ ଯେ, ଛଣ ବୋଝଏ ଲେଖାଏଁ ଦେଲା ବେଳକୁ ତମର ହାଙ୍କାସି ଉଠିପିବ । ସେ ଦିନ କହୁଥିଲି ପରା, ଦୁବ ଓଝାଙ୍କୁ ଗଣ୍ଡି ପୂଜାଏ ମାଗିଲାରୁ ଜବାବ ଦେଲା, କାହିଁକି, ମାଷ୍ଟ୍ରେ ତାଙ୍କ ଘରୁ ଆଣି ଦେଇ ନାହାନ୍ତି ? ଖାଲି କଣ ମାଗଣାରେ ଦରମା ଖାଇବେ କି ?"

ରଥେ ଗୁଣ୍ଡି ପଣକୁ ଚାରଫେ ଭିଡ଼ି କହନ୍ତି, "ବାଃ, ଏ ତ ଦକ୍ଷିଣି ପଣ ପରା ! ଲକ୍ଷ୍ମୀ ପଲା ବର୍ଷ ଧବଳେଶ୍ୱର ଯାଇଥିଲି ଯେ, କଟକରୁ ଆଣିଥିଲି । କଣ କହିବ ସେ ପଣର ଗୁଣ—"

କଥାର ଖିଅ ଛିଣ୍ଡି ଯାଏ । ମାଷ୍ଟ୍ରେ ତାକୁ ଯୋଡ଼ି ଦେଇ କହନ୍ତି, "ଆଚ୍ଛା ରଥେ, ଦୁବ ଓଝା କଣ ମତେ ଦରମା ଗଣୁଛି ?" "ଆଜ୍ଞେ

ସେଇଟା କଥା କାର୍ତ୍ତିକ କହୁଛ ? ସେ ତ ନପଟ ବାହାପିଆଟାଏ । ଶୁଣି ନାହଁ ? ସ୍ୱଭାବ ଯେମା ତା' ନାଁରେ ସେଉଁ ମକଦ୍ଦମା କରଥାଏ ଆଉ ସାକ୍ଷୀ ମାନୁଥାଏ ମଠର । ସେତିକି ବେଳକୁ ଏଣେ ଦତେନଇ ଦାସଙ୍କର ପ୍ରାପ୍ତିଭ, ଛେଣେ ମହନ୍ତ ଓଡ଼ାଙ୍କର ବୋଡ଼ ବଙ୍କ । ଦନେଇ ଡାକଥାଏ ମହାପ୍ରସାଦ ସେବା କରିବାକୁ ; ଓଡ଼ାଏ ଆସି ଲଗେଇ ଥାନ୍ତି ଚମ୍ପା ପୋଖରୀକୁ ମାଛ ମରେଇ ଦିବାଲାଗି । ଚମ୍ପା ପୋଖରୀରେ ଯେଉଁ ମାଛ, ମାଷ୍ଟ୍ରେ ! ପାଣି ପୋଷଙ୍କରେ ମାଛ ପ୍ରୋଷେ । ମାଛ କଣ, ଖାଲି ତ ତେଲ ଗୁଣ୍ଡାଏ ।"

ଇସ୍କୁଲ ଘର ଭିତରକୁ ଆଖି ତରାଟି ବେତ ଦେଖାଇ ଶିକ୍ଷକ ଚିଢ଼ ହୁଅନ୍ତି, "କଟରେ ! ପାଠ ପଢ଼ା ସରିଗଲା କି ? ହଉ ସ୍ବଳ, ମୁଁ ଯାଉଛି ଯେ ।" ଦଣ୍ଡକ ପାଇଁ ପିଲାଗୁଡ଼ିଙ୍କ ସ୍ବର ଯାହା ଟିକିଏ ବିଶ୍ରାମ ନେଇଥାଏ, ପୁଣି ବାଣ୍ଡ ଜମାଇ ଶୁଣାଯାଏ, କ — ଆକାର — କା; ହ୍ରସ୍ୱଇକାର — କି; ଦୀର୍ଘଇକାର — କୀ; ହ୍ରସ୍ୱଉକାର — କୁ ; ତେର ଷଠା ଏକାନବେ ପଣ ପାଞ୍ଚକାହାଣ ଏଗାର ପଣ ।— ଦଶରଥ ଅଯୋଧ୍ୟାର ରଜା ଥିଲେ ।

ଅଗଣି ରଥେ ପୁଣି ଗପ ଆରମ୍ଭ କରନ୍ତି, "ଆମ ବେଳର ପାଠ କୁଆଡ଼େ ଗଲା ହେ ମାଷ୍ଟ୍ରେ ! ବାଡ଼ି ବେଲେ କା, ଚଢା ଦେଲେ କି । ଅଙ୍କୁଶୀ ବେଲେ କୀ, ଝୁଲୁ ଅଙ୍କିଆ କୁ । ପୁଣି ଓଡ଼ାଙ୍କ, ଫେଡ଼ାଙ୍କ, କୋଇଲି, ଗୋପୀଭାଷା । ଏବେ କଣ ନା, ଚଢ଼େଇର ଦୁଇଟି ପକ୍ଷ ଥିବାରୁ ତାହାକୁ ପକ୍ଷୀ କହନ୍ତି—ଏଗୁଡ଼ା କି ପାଠ ହେ !"

ମାଷ୍ଟ୍ରେ କହନ୍ତି, "କାର୍ତ୍ତିକ, ମାଟିକହଁଣ ଅବଧାନ ଏବେ ଭଣ୍ଡ ହୁଦାଳୀ କରୁ ନାହାନ୍ତି କି । ତେବେ ଇସ୍କୁଲ ପାଠ ହେଲା କଆସ ।"

ମାଷ୍ଟ୍ରଙ୍କ କଥାରେ ରଥଙ୍କର କାନ ଯମାରୁ ନଥାଏ; ଇସ୍କୁଲ ବାରଣ୍ଡାରେ ବସିବାର ଅସଲ ମତଲବ ହେଉଛି, ଖେତ କଥାଣ

ଉଗିବା । ସେଠାରୁ ବାହାରିଲ ଚକଠା ସଫା ଦେଖାଯାଏ । ଇଥେ କଥା ମଝିରେ ହେ ହେ ଡାକ ଗୋଲୁ ଧ୍ରୁଚ୍ଚେଲବାକୁ ଉଠି ପଡ଼ନ୍ତି । ପୁଣି ଇସ୍କୁଲ ଭିତରଟା ଭୂନ୍ ଚାନ୍ !

ବେତଖଣ୍ଡ ଦଳଇ ମାଷ୍ଟର ଇସ୍କୁଲ ଘରେ ପଶନ୍ତି । ଘରର ଏପାଖରୁ ସେ ପାଖ ଯାକେ ସୁଇଁ ସୁଇଁ ବେତଖଣ୍ଡ ସବୁର ପିଠି ଗୋଡ଼ ହାତ ମୁଣ୍ଡରେ ବୁଲି ଆସେ । ଉହୁ, ଆହା, ଉହୋ, ମାଷ୍ଟ୍ରେ ମରିଗଲି ପାଟି ଭିତରୁ ପୁଣି ଶବ୍ଦ ବାହାରି ଆସେ—

"କ ଆକାର କା—ହ୍ରସ୍ୱଇକାର କି—ଦୀର୍ଘଈକାର କୀ—ହ୍ରସ୍ୱଉକାର କୁ—ଷୋହଳ ନୁଆଁ ଚଉତିଶା ଶବ୍ଦେ ପଣ—" ପୁଣି ଖଣ୍ଡକ ପରେ କିଏ ଜଣେ ନାଲିସ କରେ, "ଆପଣେ, ଅନାଥ ମତେ ଖେଚଇ ଦେଉଚି ।" ଅନାଥ ବି ଜଣାଏ, "ସେ ମତେ ମାରିବାକୁ କହୁଚି, ଆପଣେ ।" ସାକ୍ଷୀ ଗୁହା ପ୍ରମାଣ ନିଆ ହୋଇ ଶିକ୍ଷକ ସ୍ଥିର କରନ୍ତି, ଦୁହେଁ ଦୁହିଙ୍କର କାନ ତିନଥର ମୋଡ଼ିବେ । ଆଉ ଦୁହେଁ ଦୁହିଁଙ୍କର ନାକ ଧରି ପାଞ୍ଚ ଥର ଉଠ ବସ ହେବେ ।

ପିଲା ଯୋଡ଼ିଙ୍କର ଉଠ ବସ ନାଚ ଦେଖି ଆଉ କିଏ ଚାଟକା ହେଇ ହସିଦେଲା, କିଏ ହୁହାଁ ହସିଁ ହୋଇ ମୁହଁରେ ଲୁଗା ଦେଇ ହସିଲେ । ଏମିତି କି ପିଣ୍ଡାରେ ଯେଉଁ ଅଣ୍ଟୁଆଁ ପିଲା ଗୁରିଟି ବସି ପାଠ ଅଭ୍ୟାସ କରୁଥିଲେ ସେ ବି ପଢ଼ା ଛାଡ଼ି ଦେଇ ହସିଲେ ।

ଏତିକି ବେଳେ ଯୋଡ଼ିଏ ସାନପିଲା ଆସି ଇସ୍କୁଲ ଦୁଆର ମୁହଁରେ ଠିଆ ହେଲେ । ହାତରେ ଗୋଟିଏ ଲେଖା ନଡ଼ିଆ । ପୂଅ-ଟିର ଛଅ ସାତ ବର୍ଷ । ଝିଅଟି ତା'ଠାରୁ ଦୁ' ବର୍ଷ ଖଣ୍ଡେ ବଡ଼ ହେବ । ନିହାତି ମଫସଲିଆ ଛୁଆ । ଇସ୍କୁଲ କେମିତି ଦେଖି ନଥିଲେ ଲାଗୁଚି । ପିଲା ଯୋଡ଼ିକ ଜଳ ଜଳ କରି ଇସ୍କୁଲ ଭିତରକୁ ଆଖି ବୁଲେଇଲେ ।

କାହାରି ତାଙ୍କ ଅଙ୍ଗକୁ ନଜର ନାହିଁ । ମାଷ୍ଟରଙ୍କ ଦେହକୁ ଚାହିଁ ପିଲଙ୍କର ପାଟି ଛୁଟୁଥାଏ ଯେମିତି ମାଂଠରୁ ଚୋପା କାଢ଼ରେ ବ ଆଳ ଚଢ଼ି ବସିବେ । ଇସ୍କୁଲଘର ଦୁଆରମୁହଁରେ କାହା ଭୁଣ୍ଡ ଶୁଣା ଗଲା ।

ମାଷ୍ଟ୍ରେ ଦେଖିଲେ ଗୌରାଙ୍ଗ ଶେଣ । ଦଶପୁରରେ ଯେତେ ହେଲେ ତ ୪ଗୋଟାଏ ଘରୁଆ ଘର ସୃଷ୍ଟ ହୋଇ ନାଁ ଅଛୁ । ଉଠି ଯାଇ କହିଲେ, “କଣ କେତେ ବେଳୁ ଆସି ଠିଆ ହୋଇଛ କି ? ଭିତରକୁ ଆସୁ ନା ?” ଦାମ, ମୋତିଙ୍କୁ ଘେନ ଗୌରାଙ୍ଗ ଇସ୍କୁଲ-ଘରେ ପଶିଲ ।—“ଏଇ ପିଲ ଦୁହିଁଙ୍କର କଥା ତୁମକୁ ସେଦିନ କହୁଥିଲି ମାଷ୍ଟ୍ରେ ।”

ପିଲ ଦୁହେଁ ଧରିଥିବା ବଡ଼ ବଡ଼ ନଡ଼ିଆ ଯୋଡ଼ାକୁ ଚାହିଁ ମାଷ୍ଟ୍ରେ କହିଲେ, “ଏଇ ସବୁ ପଧାନ ପଡ଼ାରୁ ଆସି ତମ ଘରେ ପଚ୍ଛନ୍ତି ? ବାପ ନାଁ କଣଟି ?”

ଗୌରାଙ୍ଗ ମୁହଁରୁ ବରଜୁ ପଧାନର ନାଁ ଶୁଣି କହିଲେ, “ହଇତ, ପଧାନ ପଡ଼ାର ଜଣେ ମାତବର ଲୋକ ସେ । ବାଥ ଖଟେଇର ଲଞ୍ଚ ବନ୍ଧେଇ ବେଳକୁ ଆମ ଗାଁ ପଞ୍ଚାଇତ ନିସାପକୁ ଉଜର ଦେଇ ଆସି ନ ଥିଲେ କି ? ନୁହେଁ ? ଆଚ୍ଛା ଆସିଲୁଟିର ବାପୁ, ତୋ ନାଟି କଣ କହିଲୁ ?” ଦାମ ମୋତି ସେତେବେଳକୁ ଇସ୍କୁଲ ଭିତର ଚିତ୍ରପଟକୁ ଚାହିଁ କାବା ହୋଇଗଲେଣି ।

ଦୁଇ ପିଲଙ୍କଠାରୁ ନାଁ ଲେଖେଇ ଆଠ'ଣା ଲେଖାଁ ପୁଣି ନଡ଼ିଆ ଯୋଡ଼ିକ ପାଇ ମାଷ୍ଟରଙ୍କ ମନ ଖୁସ୍ ହୋଇଗଲା । ଦାମକୁ ଚାହିଁ କହିଲେ, “ଏ ପିଲଟି ଭଲ ବୁଧିଆ ପଢ଼ିବ । ତା' ଆଖି ଦେଖି ଜଣା ପଡ଼ୁଛି !”

ବଉଜୁ ହାସବୋଉଙ୍କ ପାଖରୁ ଶୁଣିଲା, ଦାମ ମୋତିଙ୍କୁ ନେଇ ଗାଁର ଇସ୍କୁଲରେ ପଢ଼ିଲାଣି । ହସିଦେଇ କହିଲା, "ଗୌରୀକୁ କଣ କମ୍ ନମ୍ବରଙ୍କ ଆସେ ? ଦଇ ଦେଖ, ଦ' ଅକ୍ଷର ପଢ଼ିଯାନ୍ତୁ । ତେବେ ମୋତିକୁ ଘର କାମ ପାଇଟିରେ ଟିକିଏ ହରକତ ପଡ଼ିବ ।"

"ମୋତିଟା କଣ ଘର ଆଗୁଳି କରୁଥିଲା ମ ! ସେ ଯୋଉଠାକୁ ପର ହେବ ତାହାକୁ ଘର ରହିବେ ନାହିଁ ।"

କମାର ଶାଳରେ ପଜାଇବାକୁ ଯିବା ପାଇଁ ବଉଜୁ ଗୋଟାଏ ହାତରେ ଲଙ୍ଗଳ ଲୁହା ଖଣ୍ଡେ ଧରିଥାଏ । ହାସବୋଉର ଆଖି ଦୁଇଟି ଆଜ ଜାହିଁକି ତାକୁ ଖୁବ ସୁନ୍ଦର ଦିଶିଲା । ତାହାର ଯେମିତି ସଂସାର ଗୋଟାକରେ କିଛି ଅଭାବ ନାହିଁ କି ଭାବନା ନାହିଁ । ବଉଜୁ ତା' ଆଖକୁ ଆଉରି ଟିକିଏ ଲାଗି ଆସି ନିଜ ଅଜାଣତରେ ଯେମିତି ହାସବୋଉର ଆଖି ଉପରେ ପଡ଼ିଥିବା କାଳ କେଶକୁ ସଜାଡ଼ିଦେଲା । ହାସବୋଉ ବି ଯେମିତି ଟିକିଏ ଚମକିଲା ହୋଇ କହିଲା, "ହେ, କିଏ ଦେଖିବ ମ ।" ଗୋଟାଏ ହାତରେ ଲଙ୍ଗଳ ଲୁହାଟା ମୁଠାଇ ଆଉ ହାତରେ ବଉଜୁ ସ୍ତ୍ରୀ ଦେହରୁ ଲୁଗାଟାକୁ ଟାଣିଦେଲା । ନିଜ ଛାତି ଉପରେ ତାକୁ ଜାକି ଧରି କହିଲା, "ଚାଲ ଘର ଭିତରକୁ—କହୁଛ ।"

ବଉଜୁର ଏଭଳି ଢଙ୍ଗ ସ୍ତ୍ରୀ ପାଖରେ ଆଜି ନୂଆ ନୁହେଁ । ତେବେ ଘର ଭିତରେ କଜିଆ ହେଲା ବୋଲୁଁ ସେ ସ୍ୱାମୀ ସୁଆଗ ପାସୋରି ପକେଇଥିଲା । ବଉଜୁର ସେହି ଟାଣୁଆ ଛାତି ଉପରେ ହାସବୋଉର ଓଦଟା ବାଜି ମନ ତାର ପାଣି ପାଟିଗଲା । କେତେ ପୁରୁ କଥା ତାର ମନେ ପଡ଼ିଲା । ବଉଜୁର ଏହି ଛାତି ଉପରେ ମୁଣ୍ଡ ରଖି ସେ କେତେ ଦୁଃଖ ଭୁଲି ଯାଇଛି । କେତେ ଲୁହ ପୋଛି

ଦେଉଛୁ । ସେହି ସ୍ତୁପ ଉପରେ ଟିକିଏ ଆଶ୍ରା ମିଳିଲେ ହାସବୋଉକୁ କୋଟିନିଧି ପାଇଲା ଭଳି ଲାଗେ । ଆଜି ବି ସେମିତି ଲାଗିଲା । କେତେ ଯୁଗ ପରେ ଦେଖାଣି ! ହାସବୋଉ ଆଖି ବୁଜି ଦେଲା । ସେ ଆଖି ଆଉ ତାର ନ ଫିଟନ୍ତା ହେଲେ !

ଘରୁ ବାହାର ଦରଜା ଡମାରଣଶାଳାକୁ ସ୍ଥଳସ । ହାସବୋଉ ମନଖିଠା ପଟଭର ନଡ଼ିଆପତ୍ର ଛପ୍ପର ବସିବ ଖଡ଼ିଆ ଭରିବ ବୋଲି ।

ଦାମ ମୋଣ୍ଟ ଇସ୍କୁଲରୁ ଫେରିଲେ । ଗୌରୀ ଯେଉଁ ନୂଆ ସିଲେଟ କିଣି ଦେଇଛି, ବୋଉକୁ ଆଣି ଦେଖାଇଲେ । ଦାମ ତାହାର ଖଡ଼ି ଦୁ'ଖଣ୍ଡ କାଢ଼ି କହିଲା, "ଦେଖିଲୁ ବୋଉ, ଏଇ କହନ୍ତି କୋଚିଲାଖଡ଼ି, ଆଉ ଯ୍ୟାଁଟା ଦୁଧ ଖଡ଼ି । ଦୁଧ ଖଡ଼ି ଗୁଣ୍ଡାକ ସହଳ ଘୋରି ହୋଇଯିବ । ହେଲେ, କୋଚିଲା ଖଡ଼ି ବହୁତ ଦିନ ରହିବ ।"

ବୋଉ କହିଲା, "ଦେଖି ଲେ ମୋଣ୍ଟ, ତୋର କମିତି ଖଡ଼ି । ଇସ୍କୁଲରେ କଣ ଖଡ଼ି ସିଲେଟ ମିଳେ ?"

ମୋଣ୍ଟ ଦାମକୁ ଚୁଣ୍ଟି ବୋଉକୁ ହସରେ ଉଡ଼େଇ କହିଲା, "ଆରେ ଏ କିଛି ଜାଣେ ନାହିଁ । ଇସ୍କୁଲ କଣ ଦୋକାନ କି ? ଗୌରୀଦାଦା ସବୁ ଆମକୁ ଦୋକାନରୁ କିଣେଇଦେଲେ !"

"ମାଷ୍ଟର ତୁମକୁ କଣ କହିଲେ ?"

ଦାମ କହିଲା, "ଆମକୁ ନାଁ ପଚାରିଲେ । ଆମ ବାପାଙ୍କୁ ସେ ଜାଣନ୍ତି ମ । ନାହିଁବେ, ଅପା ? ବାପଙ୍କି କହୁ ନ ଥିଲେ ? ବାପାଙ୍କୁ ଆମର କେତେ ଲୋକ ଜାଣନ୍ତି । ବୋଉକୁ କେହି ଜାଣନ୍ତି ନାହିଁ ।"

ସାନ ଭାଇର ବୋକାପଣିଆରେ ମୋତି ଓଠ କାମୁଡ଼ି ତାକୁ ଆକଟ କଲା, "ହେଃ, ବୋଉ ପରି ମାଇପି ଲୋକ, ତାକୁ କମିତି ଜାଣିବେ ?"

"ମୋତି ଲୋ, ପିବୁଟି ଆମର, କଣ ଘର ପଟା ଉପରେ ଝୋଟେଇରେ ମୁଆଁ ଅଛି । ଗୋଟିଏ ତୁ ନବୁ—ଆଉ ଗୋଟିଏ ଭାଇକୁ ଦବୁ ।"

ଦାମ ଓ ମୋତି ସାଙ୍ଗରେ ଯାଇ ମୁଆଁ ଆଣି ଚୋବେଇ ଚୋବେଇ କହିଲା, "ଏଥିରେ ତ ନଡ଼ିଆ ପାତ ପଡ଼ିଛି । ଆଜି ଏ ମୁଆଁ କେଉଁଠୁ ଆସିଥିଲା କି ବୋଉ ?"

"ପଦିଆ ମାମୁଁ ଧନୁମୁଆଁ କରିଥିଲା ଯେ, ତମ ବର୍ତ୍ତିଙ୍କ ପାଇଁ ଯୋଡ଼ିଏ ଦେଇ ଯାଇଛି । ମାଷ୍ଟର ଆଜି କଣ କହୁଥିଲେ ରେ ଦାମ ?"

"ସେ କନ୍ଥରେ ଆମ ବାପା ନାଁ ଲେଖିଲେ । ମୋ ହାତରେ ଖଡ଼ିଧରି ମୁଣ୍ଡୁଳା ବୁଲେଇଲେ ।"

ମୋତି ମୁରବୀପଣିଆ ଦେଖେଇ କହିଲା, "ହେଃ, ଆମ ନିଜ ନାଁ ଲେଖିଲେ ନା, ବାପା ନାଁ ଲେଖିବେ କାହିଁକି ? ବାପା କଣ ପାଠ ପଢ଼ିବେ ?"

"ବାପା ନାଁ ଲେଖି ନାହାଁନ୍ତି ? ଆଚ୍ଛା, ଦାଦି ଆସୁ, ପଚାରିବା ।"

"ହଉ, ହଉ, ତୁ ଭାରି ସତିଆ ।"

"ନାହିଁ, ତୁ ତ ଭାରି ସତିଆ ।"

ଲୁହା ପକେଇ ସାରି ଦଉଜୁ ଘରକୁ ଫେରିଲା । ଦାମ ତା' ବାପକୁ ଦୌଡ଼ି ଯାଇ କହିଲା, "ଆଚ୍ଛା ବାପା, ଇସ୍କୁଲରେ ଭଲା ତୁମ ନାଁ ଲେଖା ହୁଏ ନାହିଁ ?" ମୋତି କହିଲା, "ବାପା ମ, ଆମେ

ପିଲା ପାଠ ପଢ଼ିଲୁ, ଆମ ନାଁ ଲେଖା ହବ; ତୁମ ନାଁ କାହିଁକି ଭଲା ଲେଖିବେ ?"

ବରଜୁ ବୁଝାଇ ଦେଇ କହିଲା, "ହଁ, ପିଲାଙ୍କ ନାଁ ସାଥିରେ ବାପ ନାଁ ଲେଖନ୍ତି । ନ ହେଲେ କାହାର ପିଲା କମିତି ଜଣା ପଡ଼ିବ ?" ହାସ୍ୟବୋଉ ବରଡ଼ା ଠସାକୁ ମୁହଁ ଟେକି ବରଜୁକୁ ଚାହିଁ ହସିଲା ।

ବାମର ଜସ୍ତ ଦେବାକୁ ସେ ଭଉଣୀକୁ କହିଲା, "ଏଁ, ଦେଖିଲୁ ଏଥର ? ମୋ କଥା ହେଲା କି ନାହିଁ ।"

ମୋତି କହିଲା, "ନାହିଁ ବାପା, ସେ କହୁଥିଲା ଆମ ନାଁ ଲେଖା ହେଇ ନାହିଁ । ଖାଲି ବାପା ନା । ଆଚ୍ଛା, ବୋଉ ନାଁ ତେବେ କାହିଁକି ଲେଖା ନ ହେଲା ?"

"ବୋଉକୁ ତ କେହି ଜାଣନ୍ତି ନାହିଁ । ନୁହେଁ ?" ଦାମ କହିଲା ।

ବରଜୁ ହାସ୍ୟବୋଉ ଆଡ଼କୁ ଚାହିଁ ହସି ହସି କହିଲା, "ସେ କଥା ନୁହେଁ ଯେ, ବାପା ବୋଉ ଦୁ'ଜଣ ଭିତରୁ ଜଣକ ନାଁ ଲେଖା ହେଲେ ତ ଚଳିଲା । ଯୋଡ଼ାଏ ନାଁ କାହିଁକି ଲେଖା ହବ । ପୁଣି ବାପା ସବୁବେଳେ ବାଣ୍ଡବାଟରୁ ବାହାରେ ବୋଲି ତାକୁ ସମସ୍ତେ ଜାଣନ୍ତି, ତାର ନାଁ ଲେଖା ହୁଏ ।"

ମୁହଁ ସଞ୍ଜ ହୋଇ ଯାଇଥାଏ । ଗୋଠରୁ ଫେରି ଗୋରୁ ଘର ଭିତରେ ପଶିଲେ । ବରଜୁ ଗୋରୁ ବାନ୍ଧିବାକୁ ଗୁହାଳକୁ ଗଲା । ହାସ୍ୟବୋଉ ଖଡ଼କାଠିକ ସଜାଡ଼ି ପଦ ପୂଜାକ ଧରି ହାଣ୍ଡିଶାଳରେ ପଶିଲା । ଖଣ୍ଡେ ଚିରାକନା ଆଣି ବଳତା ବଳିଲା । ଧୂପ ଲଗାଇ

ଆଗ ତୁଳସୀ ଚଉରା ମୂଳେ ସନ୍ଧ୍ୟା ଦେଲା; ସବୁ ଦିନ ପରି ଚଉରା ମୂଳେ ମୁଣ୍ଡିଆ ମାରି ଟୁପ୍ ଟୁପ୍ କରି ସ୍ୱାମୀ ଆଉ ପିଲାଙ୍କର କେତେ ଜଣ ଶୁଭ ମନାସିଲା । ଚୁଲ୍ଲୀ ଉପରେ ପାପଟି ରଖିଦେଇ ସେତେବେଳ କାମରେ ଲାଗିଲା ।

ବଉଳ ବାରି ପୋଖରୀରେ ମୁହଁ ହାତ ଧୋଇ ଭାଗବତ ପୋଥିଟି ଧରି ଆସି ଚୁଲା ପାଖରେ ବସିଲା । ଭାଗବତ ଅଧ୍ୟାୟକ ପଢ଼ିସାରି ପୁଣି ସେଇ ଗୋରୁମୁହାଁ, କୁଟାପଟା, କେଉଁ ଗୋରୁଟା ଗୋଡ଼ରେ ଫଡ଼ାକ୍ଷତ ହୋଇଯାଇଛି, କାହା ବେକଟା ଜୁଆଳରେ ଛିଣ୍ଡି ମାଛି ବସୁଛନ୍ତି, ଏଣେ ଉଷୁମ ନ ହେଲେ ପିଉନାହାନ୍ତି, ସବୁ ଦେଖିବ । ସେତେବେଳକୁ ହାରବୋଉ ରନ୍ଧାକାମ ସାରି ପିଲା ଯୋଡ଼ିଙ୍କୁ ଖୁଆଇ ପକେଇଥିବ । ଗୌରୀ କେଜାଣି ମାସ ଭିତରେ ଆଠ ଦଶ ଦିନ ଘରକୁ ଆସୁଥିବ । ବାକି ଦିନ ତାର ବାବାଜୀଙ୍କ ଆଡ଼ାରେ ଠୁଙ୍ଗି ଭିତରେ କଟିଯାଏ ।

ଗୁହାଳ କାମ ସାରି ବଉଳ ଦେଖିଲା ଆଜି ବି ଗୌରୀ ଆସିନାହିଁ । ହାରବୋଉ ଥାଳିଟିରେ ତତଲା ଭାତ ଆଣି ଥୋଇଲା । ଆଜି ସେ ମୁଗ ଡାଲିରେ ବାଇଗଣ ପକେଇ ବଢ଼ିଆ କରି ଡାଲମା କରିଛି । ମେଥି ଶାଗ କେଡ଼ିଏ ସନ୍ତୁଳିଛି । ପିତା ଶୁଖୁଆ ପୁଞ୍ଜାଏ ପୋଡ଼ି ତା' ପାଖରେ ସୋରିଷ ତେଲ୍ କାଞ୍ଚୁଲିଟା ଲୁଣ ଟିକିଏ ଆଉ ଯୋଡ଼ାଏ କଞ୍ଚାଲଙ୍କା ଥୋଇଛି । ମୂଳା ପକେଇ ଭୂରସଙ୍ଗା ପତରି ଚୁଙ୍କି ପଥୁରି ବେଲାରେ ଅଧ ବେଲାଏ କାଞ୍ଜି ରଖିଛି । ଭାତ ତରକାରିର ଗରମ ବାମ୍ଫରେ ବଉଳର ଭୋକ ଟିକିଏ ବଢ଼ି ଉଠିଲା । କାଞ୍ଜିରୁ ହାପୁଡ଼ାଏ ଖାଇ କହିଲା, "ବାଃ, କାଞ୍ଜିଟା ତ ଭାରି ସରସ ହୋଇଚି ।"

ହାଣ୍ଡିବୋଉ ଠିଆ ହୋଇ ସ୍ୱାମୀଙ୍କ ଆହାର ଦେଖୁଥିଲା । କହିଲା, "ସେତେ ଯାହାକୁ କହୁ ତ ମାଛ ମୁଣ୍ଡାଏ ହେଲା ନାହିଁ ।" "ମାଛ ନ ହେଲେ ତ ଶୁଖୁଆ ଅଛି" କହି ବରଜୁ ଆହାରରେ ମନ ଦେଲା; ଟିକଏ ପରେ କହିଲା, "ଆଜି ତ କଣ ଗୌରୀ ଘରକୁ ଆସୁ ନାହିଁ ?"

"ନାହିଁ, ଆଜି ତ ତାଙ୍କର ପୁଣି କଣ ମଉଚ୍ଛବ, ତାଙ୍କ ଜୋଉଦା ଗାଦକୁ କଏ ସବୁ ବାବାଜୀ ଆସିଛନ୍ତି ଶୁଣ !"

"କଣ ଆଠକାଳ ତାର ମାସି ତ ବାବାଜୀ ଘୁଙ୍ଗୁଡ଼ ନାହାନ୍ତି । ମୁଁ ଗୋଟାଏ କଥା ଭାବୁଥିଲି । ଗୌରୀକୁ ଦ'ହାତ କରି ଦେଲେ କେମିତି ହୁଅନ୍ତା ?"

ହାଣ୍ଡିବୋଉ ଏ କଥା ଜାଣେ ଗୌରୀକୁ ପସନ୍ଦୁଥିଲା । ଗୌରୀ ତ କଣ୍ଟି ତାର ପୁଅ ଝିଅ ନୁହେଁ । ବେଶି କଗର କାହିଁକି କରନ୍ତା ? କହିଲା, "ସେ କଣ ଆଉ ବାହା ହେବେ ? ଘର ଦୁଆର କାହିଁରେ ତାଙ୍କର ତ ମନ ନାହିଁ । ସେ ଦିନ ପୁଣି ହାଟର ପୁଅ ଏକୋଇଶିଆକୁ ମନେ ଆଣି ଘରର ପେଟର କଞ୍ଚିଟା ବି ଦେଇ କହିଲେ, ଏହା ଭିତରେ ଯାହା ସୁନା ରୁପା ଅଛି, ତୁମେ ସବୁ ଦେଖ । ଏକୋଇ-ଶିଆକୁ ଯାହା କହୁ ଲୋଡ଼ା ପଠେଇ ଦିଅ । ମୋର ଆଉ କଣ ହବ ?"

ବରଜୁ ପଚାରିଲା, "ସେ କଥା ତ କହୁଥିଲା ସେ ଦିନ । କଞ୍ଚିଟା କଣ ସେ ଆଉ ନେଇ ନାହିଁ ?"

"ନାହିଁ ମ, ନେଲେ ଆଉ କୋଉ ଦିନ ? ସେ ଯେଉଁ କାନ୍ଥ-କୁଣରେ ଥୁଆ ହୋଇଥିଲା, ସେଇଠି ଅଛି ।"

"ତମେ ତ ପେଟେର ଫିଟେଇ କିଛି ଜିନିଷ କଡ଼ାକଡ଼ି କର ନି ?" ବରଜୁ ହସି ହସି ପଚାରିଲା ।

ହାସବୋଉ ମୁହଁ ଫୁଲାଇ କହିଲା, "ଆଜ୍ଞା, ମୁଁ କଣ ସ୍ୱୈରଣୀ ହୋଇଛି କି ? ନାଣ ଏବୋଇଣିଆକୁ ତ ସବୁ ଚାଳ ସେ ମୋ ଆଗରେ ମେଲିଇ ଦେଲେ । ମୁଁ ତେବେ ମୋର ଝୁମ୍ଟା ଭଙ୍ଗେଇ ଖଡ଼ୁ ଅଣ୍ଟାମୁଠା କଲି ଜାଣିକି ? ତମେ ଆସୁ ନ ଦେଖିବ, ତାଙ୍କର ଯେତେ ଥାନ ଗହଣା ଥେଲା, ସବୁ ସିମିତ ଅଛି କି ନାହିଁ ।"

"ତମେ ଯାଉଛ ଜାଣିକି ? ମୁଁ ସିମିତ ଟିକିଏ ଛଳେଇ କର କହୁଥିଲି ନା ?"

"ମତେ ସେ ଛଳାଛଳ କଥା ଆସେ ନାହିଁ । ନିଜ ଘରୁ ତ ବାହାରି ଆସିଲ ଯେ, ବୁଲିବାକୁ ପେଡ଼ିଟି ଛଡ଼ା କାଳିକାଠି ଖଣ୍ଡେ ବି ଆଣିଛି ବୋଲି କେହି କହିବ ନି ।"

"ଜାଣିକି, ଦାନ୍ତକାଠି ଖଣ୍ଡେ ଆଣିବାକୁ ମୁଁ କଣ ମନା କରୁଥିଲି କି ?"

"ହଁ, ତମେ ତ ଖାଲି ଭଲ ଲୋକ । ମତେ କେଉଁଥି ପଦରେ ରଖିଚ ଯେ,ପୁଣି କହିଲଣି ଗୋଷ୍ଠ ଘର ଗହଣାରେ ଲୋଭ କରିବ ।"

"ତମର ଏଠି ଯେବେ କିଛି ଅସୁବିଧା ହେଉଛି, କହୁନ ?"

"ନାହିଁ, ନିଜ ଘର ଗୁଡ଼ ତ ମରଘଟରେ ରହିଲି । ମୋର ଆଉ କି ଅସୁବିଧା ?"—ହାସବୋଉ ହସି ପକେଇଲା ।

ବଉଳ କହିଲା, "ସତେ ତମକୁ ମୁଁ ନଉନ୍ତାରେ ଦେଖୁଛି । ଘର ଗୁଣ୍ଡ ତ ଏଠି ଆସି ଏତେ ବଡ଼ ଉଠିଲା । କହିଲ ଭଲା, ଗୌରୀ କେଉଁ ଦିନ ମତେ କି ତମକୁ କି ପିଲାଙ୍କୁ ହେଲେ ପର ଭଳି ଦେଖିଲଣି ?"

ହାଣ୍ଡିବୋଉ ଜିଭ କାମୁଡ଼ି ଦେଲା । "କଣ କହୁଚ, ଗୌରୀକୁ ମୁଁ ନିନ୍ଦିବି । ତାଙ୍କୁ ନିନ୍ଦିଲେ ମୋତେ ନର୍କପୁରେ ଠାବ ମିଳିବ ଭଲା ?"

"ତେବେ ଆଜି ପରଘର କାହିଁକି କହୁଚ ? ନିଜଘର ଠାରୁ ତ ଏଠାରେ ଆଜିର ବେଶି ସୁଖରେ ଅଛ ।"

"ସେ କଥା ମୁଁ କଣ ନାହିଁ କଲି ।"

"ସେଇଥିପାଇଁ ମୁଁ କହୁଥିଲି ତାଙ୍କୁ ହାତକୁ ଦ'ହାତ କରିଦବା । ଆମ ପାଇଁ ସେ କରୁଚ । ଆମେ କଣ ଏତିକି ତା ପାଇଁ କରି ପାରିବା ନାହିଁ ?"

ହାଣ୍ଡିବୋଉ କହିଲା, "ତମକୁ ପରା ମୁଁ ଏଇ କଥା କହିବି କହିବି ବୋଲି କେତେ ଦିନୁଁ ହେଲଣି । ତାଙ୍କର ଆଉ ତ ବାପା ଖୁଡ଼ୁତା କି ମା ଭଉଣୀ ନାହାନ୍ତି ଯେ ଏ କଥା ଭାବିବେ । ଆମକୁ ସେ ତ ମୁରବୀ କରି ମାନିଚନ୍ତି । ତାଙ୍କ ବାହାଘରେ ତାଙ୍କର ଘରୁ ସବୁ ଖରଚ ହବ । ଆମର ଖାଲି ଟିକିଏ ବୁଝିବବା କଥା ।"

"ତେବେ ସେଥିରେ ସେ ମଙ୍ଗିବେ ତ । ତମେ ପରା କହୁଚ ତାର ଯମାରୁ ମନ ନାହିଁ ?"

"ସେ ତମ କଥା ଟଳେଇ ପକେଇବେ ନାହିଁ ।"

"କେମିତି ଜାଣିଲ ?"

"ହଁ, ତମକୁ ସେ ଖାତିର ମାନନ୍ତି । ମୁଁ ସେ ଦିନ ପଚାରିଲାରୁ ପରା କହିଲେ, ଭାଇଙ୍କର କଣ ଏହା ଇଚ୍ଛା ? ମୁଁ କହିଲି, 'ହଁ ।

ଆଜ ମୁଁ କଣ ବାହାଘର ଠିକଣା କରିବ ? ସେ ସିନା ସବୁ ବୁଝିଲେ ।' ଚେଇଁଭୁଣ୍ଟ କହିଲେ, 'ଆଉ କାହିଁକି ସେ ଜଞ୍ଜାଳରେ ମତେ ପକେଇବାକୁ ବାହାରିଚ ? ମୋର କି ଆଉ ବୟସ ଅଛି ?' ମତେ ହସ ମାଡ଼ିଲା । ସେକଥା ତ ଶହେ କୋଡ଼ି ବରଷରେ ନାତି ନାତୁଣୀ ଦେଖି ବି ଷୋଳବରଷୀ ଝିଅ ଘର କରୁଚନ୍ତି । ତମର କଣ ହେଉଛି କି ? ମୁଁ ତ କାଲି ମରିଗଲେ ହାଣ୍ଡିବାଗା ମନେକଲେ ତା' ଆର ଦିନ ଆଉ ଗୋଟାଏ ଆଣି ଘରେ ପୂରେଇବେ । ତମକୁ କଅଁା ଲାଜ ମାଡ଼ୁଚି ?"

"ଯା' ହଉ, ମତେ ବି ଆଲୁଖା ଦେଇ ଯାଉଚ । ଖୁବ୍ ତ କହିଲ । ଆଉ କହନ୍ତ କଣ ?"

"କାହିଁକି, କଣ ମିଛ କହିଲି ? ଆମ କୁଳରେ କଣ ଏ କଥା ହଉ ନାହିଁ ? ଆମର କଛୁ ବ୍ରାହ୍ମଣ କରଣ ଘର ନୁହଁ । ବାହା ନ ହେଲେ ତ ଦୁର୍ନାମ ଅଛି । ନଣ୍ଡାବଣ୍ଡାଙ୍କରେ ତ ପୁଣି ଯଉଁ ଘରକୁ ସେଇ ଘର, ଯଉଁ କଥାକୁ ସେଇ କଥା । ତମେ ହେଲେ କେତେ, ଆଉ କଏ ହେଲେ କେତେ ।"

"ହଉ, ତେବେ ମୁଁ ଗୌରୀକୁ ପଚାରିବି । ସେ କାଳେ ନାହିଁ କରି ଦବ ? ଭଲ କଥା, ଯଉଁ ବାବାଜୀଙ୍କ ସାଙ୍ଗେ ବସ ଉଠ କରୁଚ, ତାଙ୍କୁ ତା' ହେଲେ ଆଗ କହେଁ । ସେ କହିଲେ ଆଉ ନାହିଁ କରିବାକୁ ତାର ବାଟ ନ ଥିବ ।"

"କହ ତମ ଇଚ୍ଛା ଯାହାକୁ । ମୁଁ ଜାଣେଁ ତମ କଥା ସେ କେତେବେଳେ ହେଲେ ତଳେ ପକେଇବେ ନାହିଁ ।"

ବଉଜୁର ମନ ଲାଗିଛି । କଥାଟାକୁ ପକା କରି ନେବା ଲୋଡ଼ା । ତହିଁ ଆଉ ଡେରି ଖସିବେଳଣା ବାବାଜୀ ଟୁଙ୍ଗିକୁ ବାହାରିଲା । ଟିକଏ ପାଖକୁ ଯାଇ ଶୁଣିଲା ଟୁଙ୍ଗି ଭିତରେ ଖଞ୍ଜଣି ବଜାଇ ଭଜନ ଗାଉଛନ୍ତି, "ମିଛ ମାୟାରେ କପାଁ ହେଉଛ ଲଡ଼ବଡ଼, ଲଡ଼ବଡ଼ ଲଡ଼ବଡ଼........ ।" ବଉଜୁକୁ ବାବାଜୀ ଚିହ୍ନିଥିଲେ । ଦେଖି ଡାକିଲେ, "ଭିତରକୁ ଆସ ପଧାନେ । ଆଜ କେଉଁ ଇଅଁଙ୍କର ଆଖି ଫିଟିଲା, ପଧାନେ ଏଣିକି ଗଡ଼ମାଡ଼ିଲେ ।"

ବସିପଡ଼ି ବଉଜୁ କହିଲା, "ତୁମ ମିଛୁଟା କୁଆଡ଼ୁ ଯେ କେତେବେଳେ ଆସିଲା ?"

"ସତ କଥା, ତମେ ହେଲ ଜାତିଆ ଲୋକ । 'ଜନ୍ମ ମୋହର ନିଜ ଗୁରୁ, ଉଦ୍ଧାର କେତେ ଗୁରୁ ଘନ୍ତା ।' ତମର ତ ଜାତ ହେଲା ନିଜର ଗୁରୁ; ତମେ ଆଉ ଗୋଟାଏ ଗୁରୁ କରିବ କାହିଁକି ?"

"ତେବେ ଆମେ ହେଲୁ ସଂସାରୀ ଲୋକ । ସବୁବେଳେ ଜଞ୍ଜାଳରେ ଘାଣ୍ଟି ହେଉଛୁ । ଛାଡ଼ିଲେ ବା ଜଞ୍ଜାଳ ଛାଡ଼ୁଚି କାହିଁ ? ପୁଣି କେତେ ନୂଆ ଜଞ୍ଜାଳ ଆସି ଲାଗିଯାଉଛି ।"

"ହଁ ପଧାନେ, ସେଥିପାଇଁ ଗୁରୁ କହୁଚି, 'ମିଛ ମାୟା ସଂସାର କେହି ନୁହେଁ କାହାର ।' ଏ ମୋ ବାପ, ସେ ମୋର ପୁଅ, ଏଇ ମୋର ଭାରିଯା, ସବୁ ମିଛ, ସବୁ ମାୟା, କେହି କାହାର ନୁହ । ତା ବୋଲି ସଂସାରୀ ଲୋକ ସବୁ ଛାଡ଼ି ପଳେଇବ ? ନାହିଁ, ନାହିଁ, ସଂସାରେ ଥିବ ଦେହଟେଢନ, ଆନନ୍ଦ କରୁଥିବ ମନ ।"

ବାବାଜୀଙ୍କଠାରୁ ଏ ସବୁ ତତ୍ତ୍ୱ କଥା ଶୁଣିବାକୁ ବଉଜୁର ମନ ନ ଥାଏ । ଶିଷ୍ୟମାନେ ଖଞ୍ଜଣି ତଳେ ଥୋଇ ଗଞ୍ଜେଇ ମକୁଥାନ୍ତି । ବଉଜୁ ଚାରିଆଡ଼ ଆଖିବୁଲେଇ କହିଲା, "ମୁଁ ଗୌରକୁ ସେଇ

କଥା ବୁଝାଇଥିଲି । ଘର ଲୋକେ ଗୁଡ଼ିକୁ, ତେବେ ତ ତୋର କୌପୁମା ଯେମ ତାହାର ମିଳୁ । ଘରେ ଥିବାଯାକେ ତ ସ୍ୱଧାତ ଧର୍ମ କରିବା ଦରକାର ।"

"ମାପ୍ କରନ । କଣ ସବୁରେ ଛୁଉଁବ କ ମଧାରେ ।"

ବରଜ୍ ତାଙ୍କୁ ଆଉ ବେଶି କଥା କୁହାଇ ନ ଦେଇ କହିଲା, "ଆପଣ ତାଙ୍କୁ ହିକଏ ସେଇ କଥା ବୁଝେଇଦିଅନ୍ତୁ । ଘର କବ ଗୋରୁ ଗାଈ ଭାଙ୍ଗି ହେଲେ ତାର ମନ ଥାନ୍ତା !"

ଯେଉଁ ଦିନୁଁ ବରଜୁ ତାହାର ପିଲ ମାଇପଙ୍କୁ ଆଣି ଗୌରି ଘରେ ରହିଲାଣି, ବାବାଜୀଙ୍କ ମନ ବ ଗୌରି ପ୍ରତି ଘୃଣାରେ ଧରି ଯାଇଥାଏ । ଗୌରିର ସାଙ୍ଗ ସଙ୍ଗତ ଲେକେ ଯେମିତ ସହ ପାରୁ ନ ଥାନ୍ତି, ବାବାଜୀଙ୍କ ଆଗରେ ଚୁପ୍ ଚାପ୍ ହେଲେ ହେଁ ତାଙ୍କ ମନ ବ ବିଗିଡ଼ ଥାଏ । ଭାଙ୍ଗି ଗୋଟାଏ ବାଇଶାଗାଁର ବଉଁଶ ଆଣି ଗୌରି ପୋଷିଛି ! ମୁହଁ ଉପରେ ସିନା କେହି ତାହାକୁ କିଛି କହି ପାରନ୍ତି ନାହିଁ, ଦୁ'ଇଚ ଜଣ ଏକାଠି ହେଲେ ସେ କଥା ପଡ଼େ । କଏ ବରଜୁକୁ କହେ ଅସଜୁକ ଦେବଯିଆ, କଏ ଗୌରିକୁ କହେ ବୋକା, ଗଧ ।

ବାବାଜୀ କହିଲେ, "ଆମେ କଣ ତାଙ୍କୁ ବୁଝେଇ ନ ଥିଲୁ କି ? ମଝିରେ ତାଙ୍କ ଖାଲି ପିଲା ପିଲି ଯେମ ଆସିଗଲେ ସେ ଆଉର ଦେବପିଲୁଆ ହୋଇ ପଡ଼ିଲେ ସିନା ! ଯା ହଉ, ତମେ ଆସି ରହିଲ ଭଲ କଲ । ଏଥର ଗୋଟିଏ କଥା ଯେବେ କରନ୍ତ, ତାଙ୍କୁ ଖାଲି ଧାଡ଼କୁ ବ'ହାର ଛାଡ଼ ଦେଲେ ହେଉଣି ଦିନେ ସେ ତାଙ୍କ ଘର ଜାଣନ୍ତେ ଯେ । ଧାନରେ ଜୁଆଳ ନ ପଡ଼ିବାଯାକେ ସେତ ଏମିନ୍ତ ଉଦା ଖାଇ ବୁଲା ହେଉଥିବେ ।"

ବରଜୁ ଦେଖିଲା ବାବାଜୀ ନିଜ ଆଡ଼ୁ ଗୌରୀର ବାହାଘର କଥା ଉଠେଇଲେଣି । ଉଠେଇବାର ତ କଥା । ଏମିତ ଯାହା ତାର ସମ୍ପତ୍ତି ଭୂତ ଖାଇ ଯାଉଛନ୍ତି—ସେମିତ ସେ ତାର ନିଜର ସବୁ କରିବ ଧରିବ ।

ବାବାଜୀ ପୁଣି କହିଲେ, "କନିଆ ଅଭାବ ହେବ ନାହିଁ; ଜାଣିଲ ପଧାନେ । ଗୌରୀଙ୍କୁ କନିଆ ମିଳିବେ ନାହିଁ ତ ଆଉ ମିଳିବେ କାହାକୁ ? ଜଗନ୍ନାଥ ମୌଜାରେ ପାଞ୍ଚ ଅଛନ୍ତି । ଯେମିତ ତମେ ଖୋଜିବ ସେମିତ ପାଇବ । ଦଶ ବାର ବର୍ଷରୁ ଷୋଳ ସତର ଯାଏ ।"

ବାବାଜୀ ଧର୍ମଚର୍ଚ୍ଚା କରିବା ଭିତରେ ଆହୁରି ଏତେ ଖବର ଯେ ରଖନ୍ତି ସେଥିରେ ବରଜୁ ଖୁସି ହୋଇ କହିଲା, "ଆଚ୍ଛା ହଉ, ଗୌରୀ ଆଗ ମଙ୍ଗିଲେ ତ ।"

"ତମେ ମଙ୍ଗେଇଲେ ସେ ଅମଙ୍ଗ ହେବ କାହିଁକି ? ଘରୁ ସବୁଗୁଡ଼ାକ ତା' ପଛକୁ ତା ପଛ ମଉସାଙ୍କୁ ସିନା ସେ ଟିକିଏ ତରଳ ବରଳ ହୋଇଥିଲା । ଏଭାଟିଆ କାର୍ଯ୍ୟରେ ମନ ଲାଗୁ ନ ଥିଲା । ଏବେ ତମେ ସବୁ କଣ ତାକୁ ବାହାଘୋଳା କରେଇ ଛ ମାସ ବରଷେ ତଳାତଳ ଭର ନବନ ନ ?"

ବାବାଜୀଙ୍କୁ ଜୁହାର ହୋଇ ବରଜୁ ଉଠି ପଡ଼ିଲା । ବାଟରେ ଦେଖିଲା ଗଉଡ଼ିଆ ମାମୁଁ ମୁଆଁ ବୋଝ ମୁଣ୍ଡେଇ ଡାକ ଡାକ ଯାଉଛି, "ଧନୁମୁଆଁ, ଧନୁମୁଆଁ ବୁଢ଼ାଏ ଖାଇବେ କୁଆଁ କୁଆଁ ।" ବରଜୁକୁ ଦେଖି ଠିଆ ହୋଇପଡ଼ି ପଚାରିଲା, "ଆଜ ଏଣେ କୁଆଡ଼େ ବ.ହାରି ଆଇଲ ?"

ବଉଜ୍ ଜାଣେ ପଡଆ ପାଖରେ କିଛି ଲୁଚାଇବାର ନୁହଁ । ସେ ତ ଅଖଳା ଲୋକ । ଯାହାର ହାନ ଲଭରେ ନ ଥାଏ । ବାବାଜୀ ଠୁଙ୍ଗିକୁ ବଉଜ୍ ଯାଉଥିବାର ଶୁଣି ପଡଆ କହିଲ, “ସଇଲ, ସଇଲ, ତମେ ବି ସେଠିକି ଗଲଣି ? ମୁଁ ଜାଣେ ଝସ, ମତେ ଗୁଡ଼ୁ ସମସ୍ତେ ଏଥର ବାବାଜୀ ହେବେ ।” ବଉଜ୍ ଲୁଚା ଲୁଚା ଯିବାର ମତଲବ ବୁଝେଇ ଦେଲ । କଳା କଳା ଓଠ ଯୋଡ଼ାକ ମେଲ କରି ହସିଲ ହୋଇ ପଡଆ କହିଲ, “ଏ କଥା ଆଉ ପଚାରିବାକୁ ଅଛି ? ସେଇ ବାବାଜୀ ପାଇଁ ତ ଆଜଯାକେ ନଗିର କାହାରି କଥାରେ କାନ ଦେଲ ନାହିଁ । ସେ ପୁଣି ଭଲେଇ ହଉଛି କଣ ! ହଁ ସାର ଭଲ ଲୋକ ସେ । ଜଇନ୍ତର ଗାଁରେ କନ୍ୟା ଅଛି ବୋଲି କିଏ ନ ଜାଣେ ଯେ ସେ ବାକା ଆଗଭୁର ଖବର ଦେଇ ପଠାଇଲ । ସେଇଠୁ ତ ଝିନ ଝିନ ଥର ଲୋକ ଆସି ନେଉଟି ଗଲେ । ତାଙ୍କି ସେତେବେଳେ ତ ଗୁରୁଙ୍କ ମୁହଁରୁ ପଦେ କଥା ବାହାରିଲା ନାହିଁ ? ଆଜ ତମକୁ ଦେଖି ଏତେ ଗୁଡ଼ାଏ !”

ବଉଜ୍ ପଚାରିଲ, “ଜଇନ୍ତର ଗାଁରେ କନ୍ୟା ପାଠ ଅଛନ୍ତି ?”

“କନ୍ୟା କହିଁ ଗାଁରେ ନାହାନ୍ତି, କହିଲ ? ଆମ ଏଇ ଗାଁରେ ଦରଶିଲେ କଣ ଦ’ପୁଞ୍ଜା ବଷ୍ଟା ବାହାରିବେ ନ ?”

“ତେବେ ସେ ଗାଁରେ କୁଆଡ଼େ ଭଲ ପାଠ ଅଛୁ ।”

“ମତେ ପଚାରୁ ନ । ମୁଢ଼ିବୋଝ ମୁଣ୍ଡରେ ଥିବାଯାକେ ମତେ ଏ ସ୍ବରଖଣ୍ଡି ମୌଜାରେ କହିଁ କଥା ଅଛପା ଅଛି ? ହଁ ହଁ ଜଇନ୍ତର ବାଜି ସଇତ ଝୁଅ ତ ଖାସା ଜଉଲ । ଗଉର ନାଖି ହବ ଏକା ।”

“ଅଉ ସାନ ପିଲ ନୁହ ତ ? ଗୌରର ଘର ସମ୍ଭାଳିବାକୁ ଝିକିଏ ବଡ଼ ପାଠ ହେଲେ ସିନା ।”

"ତମେ ଘାସ ପାଇଁ ଚିନ୍ତା କର ନା । ଇଚ୍ଛା କଲେ ମୋର ବ'ସର ଘାସ ବି ଜୁଟେଇ ଦେବ । ଆଉ ଖାଲି ଗଛସବୁ ମଙ୍ଗେଇଲ । ତମେ ଭଜିଲେ ନଷ୍ଟ ହବ ।"

ବରଜୁ ଘର ଭିତରେ ପଶି ଶୁଣିଲା ଗଉର ହାଣ୍ଡିବୋଉଙ୍କର ଚର୍ଚ୍ଚ ଚାଲିଛି, ସେଇ ବାହାଘର କଥା । ସେ ଟିକଏ ଆଟକିଲ ହୋଇ ରହିଗଲା । ଦାମ ହମାଣ୍ଡ ବଟେହିଁ ଘଡ଼ ଧୂଳରେ ମୁହିଁଟିମାନ ଧଳା କରି ବୋଉକୁ ଖାଇବାକୁ ମାଗିଲେଣି ।

ଗୌର କହୁଛି, "ମୁଁ କଣ ଦୁଃଖରେ ଅଛି ଯେ ବାହାହେଲେ ବେଶି ସୁଖରେ ରହିବ । ତାହା କରି ଘର ଦୁଆର କଲି । ସବୁ ତ ଟଣ୍‌କନ ଛୁଡ଼ିଗଲା । ଆଉକି ଚିନ୍ତା ସୂତା ଗଇଶେଇବ କାହିଁକି ?" ହାଣ୍ଡିବୋଉ କହି ଲଗିଛି, "ଏ କୁଆଡ଼ିକା କଥା ମ । ଲୋକେ ତ ତିନ ତିନଟା ବାହା କରି ରହୁଛନ୍ତି । କଥାରେ ତ ଅଛି ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ଆମ କୂଳରେ ପରି ଅଧା ବୁଢ଼ୀଟାମାନ ଘରକା ମଲା ବାସୀ ଆଉ କାହାକୁ ଆଦରି ରହିବେ ବୋଲି ବସିଛନ୍ତି । ତମେ ତ ମରଦ ପୁଅ ।"

ଗଉର କଥାର ଢଙ୍ଗରୁ ବରଜୁ ବୁଝିଲା, ସେ ଏକାବେଳେ ଅମଙ୍ଗ ନୁହେଁ । ଦୁହିଙ୍କ କଥା ମଝିରେ ଆସି ହାଣ୍ଡିବୋଉକୁ କହିଲା, "ତମେ ବାହାଘର ଯୋଗାଡ଼ କର । ଏଇ ମାଘ ମାସରେ କରିଦେବା ।" ହାଣ୍ଡିବୋଉ ଆଖିରେ ଆଖିଏ ହସ କୌତୁକ ପୂରାଇ ଗୌରକୁ ଚାହିଁଲା, "ଜଉସ ସିନା ହିଁ ଉଦ୍ଧରିଲେ ହବ ।"

ଗୌର ଉଠିପଡ଼ି କହିଲା, "ମତେ ଆଉ ଛେପର ହେଇ ପଡ଼ୁଛନ୍ତି କାହିଁକି ? ସେଇ ତ ନଜେ କହିଲେଣି । ଏତେଦିଁ ପରି ଶିଖାଶିଖି ହେଇତ—ଯା କରିବ କର ।"

ଗୌରି ବାହାର ସମ୍ମୁଖ ବଢ଼ଉ ସ୍ତ୍ରୀ ଆଗରେ ନିଜ ବାହାଦୁରୀ କାଢ଼ି କହିଲା, "ଦେଖିଲ ? ତୁମେ ଯେଉଁ କଥାକୁ ଏତେ ଦିନ ଘୋଷି ହଉଥିଲ, ସତେ କଥାରେ ସେ କମିତ ଛୁଇଁଗଲ ? ଗ୍ରାମ ଗୋଷ୍ଠରେ ଯେତେ ଧାନ ମକଚ ହୁଅନ୍ତା, ବଳଦ କାହିଁକି ଖୋଜା ପଡ଼ନ୍ତେ ?"

ହାଉବୋଉ କହିଲା, "ହଉ ତମେ ଗୁଡ଼େ ବଳଦ ହେଲ । କନ୍ୟା ଘାଟ ଭଲ ଦେଖିଲଣି ? ଆମ ସୁଲୁକ କହିଥେଲେ କେତେ ଭଲ ହୋଇଥାନ୍ତା, କହିଲ । ସବୁଠୁ ହେତେବେଳେ ଦରଖାସ୍ତ ନାଗିଲେ ନାହିଁ ବୋଲି ସେ ସିନା ଆଉ ଠାଏ କହିଗଲ ।"

ଆଉ ଜଣ ଖବୁ ଖବୁ ବରଜୁ ପଚାରିଲା, "ସୁଲୁ ପୁଣି କଏ ?"

"ମଲା, ସୁଲୁକ ଜାଣନ ? ଆମ ସଣଶା ଝିଅ ମ ।" ସଣଶା ହାଉବୋଉର ସାନ ଭାଇ ।

କଥାଟାକୁ ଉଡ଼େଇଦେଇ ବରଜୁ କହିଲା, "ଯାଃ, ସୁଲୁଟା ମାଙ୍କଡ଼ ଛୁଆଟାଏ, ଗୌରୀକୁ ହୁଅନ୍ତା ?"

"ମାଙ୍କଡ଼ ଛୁଆ କାହିଁକି ମ । ବାର ତେର ବର୍ଷର ଝିଅ, ଖାଇଲେ ପିଇଲେ ଗଣ୍ଡି ମୋଟିଆ ହୋଇ ଖାସା ମାଇପିଟାଏ ହବ । ଥାଉ, ସେ କଥା ତ ଗଲାଣି । ଆଉ କଉଠି ଦେଖ ହେଲେ ।"

"ହଉ ଦେଖିବା, ଆଜ ତେବେ ବାହାରିବା ।"

"କାଲି ଯିବ, ଆଜି ତ ଏକାଦଶୀ ନଷିଫଳା ଦିନଟା । କାଲି ଶୁକ୍ରବାର । ଭଲ ଦିନ ଅଛି ।"

ସେଦିନ ଗୁଡ଼ ନେଉଟା ବେଳକୁ ବରଜୁ ପଦଅ ସାଥିରେ କନ୍ୟା ଦେଖି ବାହାରିଲା । ଜଇନ୍ତରା ଗାଁଟା ହରିପୁରଠାରୁ ବାଟ ଛଅ କୋଶର ଖବର ।

ହରିପୁର ଗାଁ ଆମ୍ବତୋଟା ପାଖ ହୋଇ ଦୁହେଁ ମଣ୍ଡବନ୍ଧ ତଳେ ତଳେ ବୁଲୁଥାନ୍ତି । ଝୁଇ ଲେଉଟା ବେଳକୁ ପୁଷମାସିଆ ଶୀତ ପଡ଼ ଯାଉଥାଏ । ଧାନକଟା ସାରି କେତେ ଚାଷୀ ମୁଗ ବୁଣାରେ ଲାଗିଛନ୍ତି । ଦୂରରେ ସୋରିଷ ଫୁଲର ଗୋଟାଏ ମସ୍ତ ସୁନେଲି ଗାଲିଚ୍ଚ ପରି ଦେଉଛି । ଜଗନ୍ନୁ କହିଲା, "ଚଣ୍ଡିକଟା ମୌଜାରେ ଏବର୍ଷ ଭାରି ସୋରିଷ ହୋଇଛି । ଜଣେ ଜଣେ ଚାଷୀ ଭରଣେ ଲେଖାଁଏ ସୋରିଷ ପାଇବେ ।"

ପଦଆ ଟିକଏ ଓଚ୍ଛରେ ପଡ଼ିଯାଉଥିଲା । ପାଖକୁ ଲାଗି ଆସି କହିଲା, "ତାଣ୍ଡିଜ ନ ଖାଇବେ ? ସେ ଗାଁରେ ଚନ୍ଦଲେ ସମସ୍ତେ ଚାଷୀ । ଚାଷର ମୂଲ୍ୟ ବୁଝନ୍ତି । ମୋତେ ଝଡ଼ା ହବ ଯେ, ଗୋଟାଏ ବୀଜୁଷ ପିଲ କଏ ଘୁଞ୍ଚିବ ? ସାଙ୍ଗେ ସାଙ୍ଗେ ଜରିମାନା ନଇଲେ ଭାଙ୍ଗିଆଦେବା । ଆମ ହରିପୁରଟାରେ ତ ଯେଝା ହାତରେ ସେ ତଳିତ ଖା । କଏ କାହାକୁ ମାନେ ? ସେଥର ଯେ ବନ୍ଧଭାଙ୍ଗି ଗାଁଟାଯାକ ଧୋଇଗଲା, ଖାଲି ଭାଇଭୁକରେ ସିନା । ନଈ ଢ଼'କୂଳ ଅଚଡ଼ା ଖାଇଛି । ଗାଁ ଗାଁକର ଲୋକେ ଓଦନସତ୍ତ ଜଗି ବସିଲେ । ଏ ଗାଁରୁ ପର ଝେଡ଼ାଝେଡ଼ି ହୋଇ ଜଣେ ବୋଲି କେହି ବାହାରିଲେ ନାହିଁ । ଶେଷକୁ କହିଲେ ଭଣ ନା, ସରକାର ଲୋକେ ବନ୍ଧ ଭାଙ୍ଗି ଦେଲେ । ଜରେ ହାକୁ ସରକାର କଣ ଖାଲି ବନ୍ଧ ଭାଙ୍ଗିଦାକୁ ଅଛନ୍ତି । ତାଙ୍କ ମୁଣ୍ଡରେ ସବୁ ଅଠା ବୋଜୁଛ କଅଁ ? ଆଉ କଏ କ ? ସେଇ ନାଥବାବୁ ଛଡ଼ା ଆଉ ଏତେ କଥା କାଢ଼ିବ କଏ ? ତାଙ୍କ ପିଲ୍ଲ ନରିବାସେ ପାଠପଢ଼ାରେ ଯେତେ ପଇସା ଖରଚ କଲେ ସେଥିରେ ଦୁଆଡ଼େ ବାଟିଏ ବଲ କଣା ହୋଇଥାନ୍ତା, ସବୁ ତ ଅକାରଣ । ବାପ ଏତଗ ଖାଲି ମୁଣ୍ଡରେ ହାତ ଦେଇ ବସିଛି । ଏବେ

ପାଠ ପଢ଼ି ତ କଢ଼ାକୁ ଯୋଗ୍ୟ ହେଲେ ନାହିଁ । ତମେ କଣ କହୁଚ ଭଲ । ସରକାର ଏକଥା କରନ୍ତା ? ନଈବନ୍ଧ କାଟିଲେ ତାର ଭଲ କଣ ହବ ?

ବଇଜୁ କହିଲା, "ହିଁ, ସେ କଥା ମୁଁ ବି ଶୁଣିଚ । କଟକ ସହରକୁ ବଞ୍ଚେଇବାକୁ ସରକାର ବନ୍ଧ କାଟି ଦେଇ ଗାଁ ସବୁ ଭସେଇ ଦେଅନ୍ତି ।"

"ହେଲେ ହେଇଥିବ ପରା । କଟକ ସହର ତ କଣ୍ଟୁ ଭମ୍ 'ସହର ନୁହ । ନାଥବାବୁ ଗପ କହୁଥିଲେ, ଗୋଟାଏ ନେଖାଁ କୋଠାଘର ଛୋଟାରେ ଯାହା ଟଙ୍କା ଲାଗିଚ, ସେଥିରେ ଲୁଆଡ଼େ ଆମ ଗାଁ ଭଳିକା ଖଣ୍ଡେ ଖଣ୍ଡେ ଗାଁ କଣା ହୋଇଯିବ ।"

ଖଣ୍ଡେ ଦୂରରେ ନଈବନ୍ଧ ଉପରେ ଦୁଇଜଣ ଲୋକ କଥା ଗପି ଗପି ଚାଲିଛନ୍ତି । ବନ୍ଧତଳେ ପଦଆ କରନ୍ତୁ, ତାଙ୍କ କାନକୁ ସବୁ କଥା ଶୁଣା ଯାଉଛି । ଆଗରେ ଚାଲିଥିବା ଲୋକଟି କହି ଚାଲିଛି, "କେଉଁ ସେ ସେ ବନ୍ଧ ଉପରେ ଖଜୁରି ଗଛଟା ଦିଶୁଚ ତମକୁ ମିଛ ମତେ ସତ । ଜନ୍ମର କଣ । ଥରେ ହାଟସଉଦା କରି ବାହାରିଲି ବେଳକୁ ମୁହଁସଞ୍ଜ ହେଲାଣି । ତା' ବୋଲି କହୁ ଅନ୍ଧାର ନୁହ । ସୁରଜ ଡେବ୍‌ଡା ମା ଭୋଳକୁ ଯାଇ ନ ଥାନ୍ତି । ଠିକ୍ ଏଇ ଜାଗାରେ ମୁଁ ଗାମୁଛା ପାଲଟି ନଈ ଭିତରକୁ ଗଲି । ଶୌଚ ହେବାକୁ ଯାଉଚି । ସେଇ ଖଜୁରି ଗଛଟା ଉପରେ ଆଖି ପଡ଼ିଗଲା । ଆଜ ଖଜୁର ହେବ କଣ ! ଆଣ୍ଠୁଏ ପାଣିରେ ତ ଛୁଡ଼ା ହେଇ ବୁଢ଼ି ରହିଛି ।"

ପଛ ଲୋକଟିର ହାତରେ ଗୋଟିଏ ସାନ କରାସିନ ଶିଶି । ବେକରେ ତାହାର ସନ୍ଦରେ ସୂତା ବନ୍ଧା ହୋଇ ଆଙ୍ଗୁଠିରେ ଝୁଲୁଚି । ପିଠି ଉପରେ ଗାମୁଛାରେ ଫାଶ ପଡ଼ି ପୁଞ୍ଜାଏ ବଡ଼ ବଡ଼ ମୂଳା । ମୁହଁ ପୋଡ଼ ସେ ଏକା ଲହସରେ ଭଷାଣ୍ଟି ଚାଲିଛି । ତଳେ ପଦଆମାନେ ତାଟକା ହୋଇ କାନଡେରି ରହିଲେଣି ।

ଆଗ ଲୋକଟି କହି ଚାଲିଲା, "ସେଇ ଖଜୁରି ଗଛଟା ଦେ । ଦେଖୁଚ ଟିକେ ।"

ପଛ ଲୋକଟି ଖଜୁରିଗଛ ଆଡ଼କୁ ଚାହିଁ କହିଲା, "ହଁ ତ ହେଲା କଣ ?"

"ଆଉ ହବ କଣ । ସେ କଥା ମନେ ହେଲେ ମୋ ତଳିପା ଯୋଡ଼ାକ ପାଣି ହୋଇଯାଏ ସତ । ସେଇ ଖଜୁରି ଗଛଟା, ଜାଇଁଲ

ମଜୁରୀ । ତା' ଅଗଣା ଯେମିତି ବାଉଁଳଖଣ୍ଡା ପରି ନହିଁ ଅଭଳ, ଏକାବେଳେ ପାଣି ଭିତରକୁ । ପଡ଼ିଆ ଉପରୁ ପୁଣି ଅଣ୍ଟେ ସିଧାକୁ ମେଳ ସିଧା ! ଭଣ ଗୋଟାଏ ଥିଲା ହେଉଛି ଯେ କହିବା ଆଗ ଉତ୍ତମ ହେଉଥିବ? ଅରକୁଅର ପରି ସାତଥର ମୁଣ୍ଡ ନଇଁଲା । ଗାଁରେ ଯାଇ ଏ କଥା ମଧୁନନାକୁ କହିଲି ଯେ, ସେ ହସରେ ହସେଇ ଦେଲେ । କହିଲେ, "ତୁ ତ ତେବେ ଶଙ୍କରଲୁଣ୍ଠ୍ୟରେ । ହେ ଜଣେ ଋଷି ଥିଲେ ଯେ ମନ୍ତ୍ରବଳରେ ଖଜୁରି ଗଛକୁ ଏମିତି ନୁଆଁଇ ଦେଇଥିଲେ ତାଡ଼ି ପିଇଥିଲେ ।" ହେଲେ 'ଦନେଇ ଯାହା କହିଲା, ତା' କଥାରେ ମୋ ମନ ମାନିଗଲା । ସେଇ ଖଜୁରି ଗଛରୁ ଜଣେ ଶିଆଳ ମଦ ଖାଇବାକୁ ଚଢ଼ି ଖସିପଡ଼ି ମରି ଯାଇଥିଲା । ସେଇ ଦିନୁ ତେଣେ ସେଲେ ସେ ଗଛଦାଣ୍ଡେ ମୁଁ ଯାଉଣିକି !"

ପଛ ଲୋକଟି ମୁହଁ ନ ଟେକି କହିଲା, "ହେଲେ ସେ ଶିଆଳଟା କାହାର କିଛି କ୍ଷତି କରି ନାହିଁ । ଜଇନ୍ତର ଆମ୍ବତୋଟାରେ ତ ଦିନ ଦି'ପହରେ ଲୋକେ ମରୁଛନ୍ତି ।"

ଆଗ ଲୋକଟି ତାହାଠାରୁ କଥା ଛଡ଼େଇ ନେଇ କହିଲା, "ସେ ଖାଲି ଶୁଣା କଥା । ସେଥିପାଇଁ ତ ମୁଁ ଦିନାରେ ଅଳ ଯାଆସ କରୁଛି । ଯେତେ ଥର ଯାଏଁ ପାଖରେ କିଛି ଖାଇବା ଜିନିଷ ଥିଲେ ସେଇଠି ଟିକିଏ ପକେଇ ଦିଏଁ । ତେବେ ଗୋଟିଏ କଥା । ଠାକୁର ପରସାଦ ଜନେଇ ସେଥିପାଇଁ କେତେବେଳେ ହେଲେ ପିଟ ନାହିଁ । ଯଦି ଟିକିଏ ପରସାଦ ନ ରଖିବ, ତେବେ ତମେ କି ଆଉ ପ୍ରାଣ ନେଇ ଘରକୁ ଫେରିବ ? ସେଠି ଖାଲି ଅମୋକ୍ଷ ଗୁଡ଼ାଏ ଅଛନ୍ତି କି ନା । ଦନେଇ ଡ଼ାଇଭର ଯାହା କହୁଥିଲା, ଶୁଣିଛ ସେ କଥା ? କେଉଁଠି ସାଙ୍ଗତଙ୍କ ସିଙ୍ଗ କାହାଘରକୁ ଟେସନରୁ ଅଭଡ଼ା ଆଣ ଦେଉଥିଲା କରି ସେ ମଠର ଦିନ ଆସୁଥାଏ । ଖାଲି ଭଣ ଅଭଡ଼ା ଅନ ? ମଠରୁ

ଭିତରେ ବର ବଉଯାତ୍ରା ହେଇ ପଡ଼ିଗଲା ତିକ୍ତି ନୋଳ । ଗଡ଼ ବୁଆଡ଼ିଙ୍କ ପଡ଼ରେ କ ପାଣ୍ଡୁପଡ଼ ହବ । ମଠର ଆଲୁଅ ତ ଦେଖିତ । ବତୁଙ୍କ ମିତ ଜଡ଼ୁଥାଏ । ସମସ୍ତେ ତାକୁ ମନା କଲେ ଛୋଟା ଭିତରେ ଯିବା ପାଇଁ । ଗାଁ ଦାଣ୍ଡ ପଛେ ଟିକଏ ବୁଲିଣି ପଡ଼ୁ, ସେଇ ବାଟେ ଗଲ । ସେ ତ ମଠର ଗାଡ଼ି ଚଲଉଚ । ତାର କୋଉଁ ଡରଭୟ ଅଛି ନା କାହାର କଥାକୁ ପସନ୍ଦ କରନ୍ତି—"

ପଛ ଲୋକଟି କଥା ମଝିରେ ବାଟଭଙ୍ଗି ବନ୍ଧ ତଳକୁ ଓହ୍ଲାଇ ଗଲା । ସେ ଆଉ କେଉଁ ଗାଁକୁ ଯାଉଥିବ । ଆଗଜଣକର ସେ ଆଡ଼କୁ ନଜର ନାହିଁ । ସେ ଆଗେ ଆଗେ ଗପି ଚାଲିଚି—

"ସେତେ ହେଲେ ଡ୍ରାଇଭର ପିଲା ସେ । କେତେ କେତେ ସିଟେପଲ ଡେପୁଟିଙ୍କି ଜବାବ ଦେଇଥିବା । କଣ କହିବ ମଜୁରୀ ଗଣିବା ମତେ ଉଚ୍ଛନ୍ନ କରିଦେଲା । ମୁଁ କଣ ଆଜ ସଂସାରରେ ଘର କରି ରହିଥାନ୍ତି ? ଦିନଦିନଟା ମକଦ୍ଦମା ଯୋଡ଼ିଦେଲ ମୋ ନାଁରେ । ମୁଁ କେଇ ମୁଣ୍ଡ—ମକଦ୍ଦମା କଏ, ମୁଁ କଏ । ସେଇ ଦଦେଇ ଥିଲେ ବୋଲି ମତେ ସବୁ ଆପଦରୁ ବଞ୍ଚାଇ ଦେଲ । ତାକୁ ଯାଇ କହିଲି, "ବାପ ଦଦେଇ, ତୁ ନ ହେଲେ ମୋର ଏଠି ଆଉ କେହି ସାହା ଭରସା ନାହିଁ ।"

ବର୍ଷକ କେଉଁ ଖେତରେ ମୁଗ, କେଉଁଠି ସୋରିଷ ଫସଲ, କେଉଁ ମାଟିଟା ଦୋରସା, କଏ ଅବା ମଟାଳ ଦେଖି ଦେଖି ବର୍ଷତଳେ ଆଗରେ ଚାଲିଛନ୍ତି । ସଦଆ କେତେବେଳ ବନ୍ଧ ଉପରକୁ ଉଠି ଯାଇ ସେହି ଗପୁଡ଼ି ଲୋକଟିର ପିଛୁ ଧରି ଚାଲିଲାଣି । ଲୋକଟି ଖାଲି ଆଗେ ଆଗେ ଗପି ଲାଗିଛି—"ଦଦେଇ ଯଉଁ ଉପୁଗାର କଲା, ତାକୁ ସାତ ଜନ୍ମରେ ସୁଝି ପାରିବ ନାହିଁ । ତାର

ଉଜୁଡ଼ିରୁ ଉଜୁଡ଼ି ହଉ । ତମେ କଣ ଖାଉଚ ମତେ ଖାଲି ବନା ଜିଲ୍ଲାରେ କଟକ ପଠେଇଲ ଦେଲ ? ନହେଲେ ଯାଇ ମଫସଲ ହାକମ ଆଗରେ ଠିଆ କରେଇ ଦେଲ । ମୁଁ କାଏ କଟକ କାଏ ? ଉକିଲ ତ ମତେ ଦେଖି ଆଗ ଦୁର୍ ଦୁର୍ ମାର୍ ମାର୍ ! ଆମେ ଚଷା ଭୁଷା । ଉକିଲ ଆଗରେ ଛିଡ଼ା ହେଇ କଥା କହିବୁଁ କୁଆଡୁ ? ହେଲେ ଦେଖିଲି ହାକମ ପିଲା ଏକା । ନଇଲେ କି ତାଙ୍କୁ ଏଡ଼େ ବଡ଼ ପାହ୍ୟା ମିଳନ୍ତା । ଖାଲି ଗୋଟାଏ ଥର, ଜାହିଲ ମଙ୍ଗସା, ଶୁଣୁଚଟିକ—

ସେ ପଚ୍ଛକୁ ଫେରି ଚାହିଁଦେଲେ କଥାର ମଜା ଲୁଚିଯିବ ବୋଲି ପଦଆ ମଝିରେ ମଝିରେ ଗୋଟାଏ ଅଧେ ହୁଁ ହାଁ କରି ଦେଉଥାଏ ।

“ଖାଲି ତ ଗୋଟାଏଥର ସେ ମୋର ଗୋଡ଼ରୁ ମୁଣ୍ଡ ଯାକେ ଅନେଇ ଦେଲେ । ମୁଁ ହାତଯୋଡ଼ି କାଠଗଡ଼ା ଭିତରେ ଛିଡ଼ା ହୋଇଥାଏଁ । ସାହସ ବାନ୍ଧି କହିଲି, ହଜୁର, ମତେ ତିନ ଓଳିରେ ଓଳିଏ ଦାନା ମିଳେ ନାହିଁ । ମତେ ଖାଲି କଟକ ଦଉଡ଼େଇ ଦହସତ କରିବ ବୋଲି ମକଦ୍ଦମା ଖଞ୍ଜି ଦେଇଛନ୍ତି । ଆଜଯାକେ ମୁଁ ନାଲିମାଟି ମାଡ଼ି ନଥିଲି, ହଜୁର । ମୁଁ କାହିଁକି ତା ଗଛରୁ ଡାଳ ହାଣିବି, ହଜୁର । ମାଇପେ ମାଇପେରେ କଜିଆ କଲେ । ଦୋଷ ଭିତରେ ମୁଁ ଖାଲି ତାକୁ ଯାହା ଚେଙ୍ଗ କରି ପଦେ ଅଧେ କହିଥିବି । ଦେଖିଲି ପରା ହାକମ ପିଲା । କଣ ବୁଝିଲେ କେଜାଣି, କହିଲା, ହଉ ଯା, ଆସାମୀ ନିରଦୋଷରେ ଖଲାସ । ଯେତେହେଲେ ହାକମ ପିଲା । ନଇଲେ ମତେ ସ୍ୱଗାବା ସାଉ ଯାହା କରିଥିଲା, ଆଉ କଣ ସଂସାରରେ ଠାବ ମିଳନ୍ତା ?”

ପଛ କଥା ମନେପଡ଼ ଛାତି ପାଟି ଖନ ମାରିଗଲି । ନିଶ୍ୱାସ ବେଗରେ ବୋହିଲା । ଆଙ୍ଗୁଠି ଅଗରେ ଆଖି ସଫା କରି ସେ ପୁଣି କହିଲା, ହଁ, କଣ କହୁଥିଲି ? ଡେଙ୍କିଶାଳରୁ ଢେଙ୍କାନାଳ ଯାଏ ଗଲଣି । ଧନେଇ ତ ମଟର ଚଳଉଥାଏ । ଯେମିତି ଆସି ଜଇନ୍ତର ତୋଟାପାଖେ ହୋଇଛୁ, ମଟର କି ଆଉ ଚଳେ ! ଝିଞ୍ଜାନ ଫିଟେଇ ଦେଖିଲା, କଉଁଠି କିଛି ଅଧଚ ନାହିଁ । ମଟର ଭିତରୁ କାଏ ଜଣେ କହିଲା, ବନ୍ଧଇ ସେ ଗଛ ମୂଳକୁ ଅନେଇଲ । ଗୁଡ଼ିଏ ଦେଲ୍ଦେଲକେ ଗୋଟାଏ ନୁହଁ କି ଯୋଡ଼ାଏ ନୁହଁ, ଏକାବେଳେକେ ଦଶ ବାରଟା । କାହାରି ମୁଣ୍ଡ ନାହିଁ, ସମସ୍ତେ ହାତ ହଲେଇ ନାଚୁଛନ୍ତି ! ଛୁଆଏ ନେଖା ପରିବାଦ ତଳେ ରଖି ଦେଲାରୁ ମଟରଟା ପୁଣି ଚୁ ଚୁ ରଡ଼ ଛାଡ଼ି ଚଳିଲା । ଆରେ ବାବୁ, ପୁଣି କୋଡ଼ିଏ ହାତ ଯାଇଚି କି ନାଇଁ, ଦେଖିଲା ବେଳକୁ ମଟର ଆଗରେ ଗୋଟାଏ କାଠଗର । ଦୁ'ପାଖେ ତ ଯୋଡ଼େ ଝାଳ । ମଟର ଆଉ ଯାଉଛି କୁଆଡ଼େ ! ଉଛ ଆଡ଼ଆ ଫେରେଇବ କି କି । ପୁଣି କଣନା, ମଟର ଯେତିକି ପଛେଇଲା, ସେ କାଠଗର ସେତିକି ତା' ଆଗକୁ ଗଡ଼ ଗଡ଼ ଆସିଲା । ଯେତେକ ପରିବାଦ ନେଇଥିଲେ ସବୁ ଆଣି କି ଥୋଇବାରୁ ଗୁଦ କାହିଁ । ତେଣିକି ଆଉ କାଠଗର ନାହିଁ, ବାଟ ଏକାବେଳକେ ସଫା । କଣ କହୁଚ, ଏତେ ନୋକ ଥିଲାରୁ ସିନା । ନଇଲେ ବନେଇ ନା ଦନେଇ ପେରି ଘେନି ! ସେଠୁଁ ପ୍ରାଣ ପାଇ ଫେରିଥାନ୍ତା ? ସେ ଆଉ କିଛି ନୁହଁ, ବୁଡ଼ିଲ ମଉସା । ଜଇନ୍ତର ଖଣ୍ଡେଇତ ଆସେ ତ ଘର 'ଡାକୁ' ଥିଲେ । ଏଇ ତୋଟାରେ କେତେ ବାଟୋଇଙ୍କି ଛେଦ ନାହାନ୍ତି । ତମ ପିଲା ଦନେ କଣ ଶୁଣିନ ? ସେତେବେଳେ ଆଗେ କଣ ଏକାଟେ ବେଶି ଯା ଆସ ଥିଲାକ ? ଯାହା କହ, ସରକାର ଏବେ ଯହିଁ

ଜାଇଦା ନଈତ—ବାଘ ବକ୍ରି ଏକାଠେଇଁ ପାଣି ପିଉଚନ୍ତି । ସେଥର ଖଣ୍ଡକୁ ପରସ୍ପୁ କାହାର ?”

ପଢ଼ଆ ଚଳକୁ ଉହ୍ଲାଇ ଆସି କହଲ, “ଶୁଣିଲ ପଧାନେ, ଆମେ ସେ ଚୋଟା ବାଟେ ଯିବା କେମନ୍ତ ?” ବରଜୁ ଗୋଟାଏ ବେଖାପର ହସ କହଲା, “କଣ ଚନ ଦ’ ପଦରେ ଆମକୁ ଭୁତ ଓ୍ୱାରୁଇବ !”

“ବାଇଜା ହେଲ, ଧନ କଣ ପ୍ରତ କଣ ହେ । ସେ ବାଟେ ଆମର ନ ଗଲେ କଣ ଚଲୁ ନାହିଁ ? ତମେ ଯିଲ, ମୁଁ ସଳଖ ବାଟ ବତେଇ ଦେବ ଯେ ।”

× × × ×

ଗାଁମୁଣ୍ଡ ଡବକା ଖଣ୍ଡକରେ ଦୁହେଁ ହାତଗୋଡ଼ ଧୋଇ ଗାଁ ଭିତରେ ପଶିଲେ । ବରଜୁ ସେଇ ବାଟେ ଆଗରୁ କେତେଥର ଯା ଆସ କଲେ ବି ଗାଁ ଭିତରଟା ଦେଖି ନଥିଲା । ଜେଉଁ ଘର କାହାର, ପଢ଼ଆ ମାମୁଁଙ୍କୁ ପଚାରି ବୁଝୁଥାଏ । ବାଜସଭର ଦୁଆର ମୁହଁକୁ ଆସି ଦୁହେଁ ଛିଡ଼ା ହେଲେ । ଘଣ୍ଟା ଉଜୁଡ଼ା ପଡ଼ିଥିଲେ ବି ଉଞ୍ଚ ପିଣ୍ଡାରୁ ଜଣାଯାଏ ପୁରୁଣା ଚାଳିଆ । ପିଢ଼ା ଉପରେ କେତେ-ସୁଡ଼ାଏ ପାଣିକଖାରୁ ଯାଉଁଣିଆ ଧଞ୍ଜଗଲାଣି । ଆଜ୍ଞ ଟେଟେଇ ଫୁଲ କସି ହେଉଛି । ପିଣ୍ଡାତଳେ ଗୋଟାଏ ଖଗଡ଼ଚଳ ଉଇଁ ହୋଇଛି । ତାହା ପାଖରେ ପାଣି କସ ହୋଇ ଗୋଲୁଏ ବଡ଼ା ହାଉଁସ । ଘର ଆମନାରେ ଗୋଟାଏ ମେଲ ଓ୍ୱହଳର ଚଳଚା ଜଆସରେ ଫୁଲ ଧରିଲଣି । ତନ ଗୁରଟି ପିଲ ଧୂଳିଘର କରି ଖେଳୁଥିଲେ ।

ପଦଆ ଡାକିଲା, "କରେ ପିଲେ, ସ୍ୱାତ ସନ୍ଧ୍ୟାର ପର୍ବ ଆମକୁ ଗଣ୍ଡେ ଦବ କି ?" ସାତ ଆଠ ବର୍ଷର ଝିଅଟିଏ ତାଙ୍କୁ କେତେବେଳେ ଯାକେ ଏକା ନଜରରେ ଚାହିଁ ରହିଥିଲା । ଚିହ୍ନିପାରି ଜବାବ ଦେଲା, "ତମେ ଆମକୁ ମୁଡ଼ି ଦବ ?" ପଦଆ ଡାକିଲା, "ଆଇଲୁ ମା, ଏଠିକି ।" ପିଲାଟି ପଦଆ ପାଖରେ ଜଣେ ଅଚିହ୍ନା ଲୋକକୁ ଦେଖି ଆସିଲା ନାହିଁ । ପଦଆ ଯାଇ ପଚାରିଲା, "ବାଳ ସାଉତ ଘରେ ନାହାନ୍ତି କି ?" ଝିଅଟି କହିଲା, "ବାପା ହାଟକୁ ଯାଇଛି ମୁଗ ବୁଣି ।"— "ଆଉ ତୁ ଏଠି କରୁଚୁ କଣ ? ଘରେ କଣ ଆଜ କେହି ନାହାନ୍ତି ?" —"ମୋ ବୋଉ ପର୍ବ ଧାନ ଉଷଉଁଚି —" କହି ଦେଇ ପିଲାଟି ଖେଳରେ ମନ ଦେଲା ।

ଘଡ଼ିକ ପରେ ବାଳସାଉତ ହାଟରୁ ଫେରିଲା । ପଦଆଠାରୁ ସବୁ କଥା ଶୁଣି ପକେଇ ଭୁଜୁଆଁ ତର୍ତ୍ତରେ ଲାଗିଗଲା । ଘର ଭିତରେ ଖଇପା ଧାନ ଉଷୁଆଁ ଗୁଡ଼ ଜଳଖିଆ ସାମଗ୍ରି ସଜାଇଲା । ବନ୍ଧୁ ନ ହେଲାଯାକେ ତ କେହି ବାହାଘରେ ସଙ୍ଗୁଡ଼ି ହେବେ ନାହିଁ । ଚୁଙ୍ଗିଘର ହାଣ୍ଡି ତଳାଣ୍ଡି ଦେଖିଲା, ସେଥିରେ ଆଠ ଦିନ ତଳର କେତୁଟା ଆରିସା ପିଠା ପଡ଼ିଚି । ବାଙ୍କା ଝିଅ ଚୁଡ଼ାପୁଆ ଅମ୍ବୁଲିସଇ ନିଜଘରୁ ସାଇପଡ଼ିଶାରୁ ଯୋଗାଡ଼ କରିଦେଲା । ଘରେ ଦୁହାଳି ଗାଈ, ହେଲେ ବି ପାଣିଅ ଗଣ୍ଡେ ତ ଦରକାର । ବାଳ ସାଉତ ବନ୍ଧୁଆ ଦୋକାନକୁ ଯାଇ କେଉଁ କାଳର ପମସ ପାଣିଅ ଆଣି ଦେଲା । ପଦଆ କହିଲା, "ତମେ ତ ଖାଲି ଧାଁ ଧପଡ଼ କରିବାରେ ଲାଗିଲ ସାଉତେ, ଆମେ ପର୍ବ ଦ'ପଦ କଥା ହେଲେ ବାହାରିପିବୁ ।"

"ହଁ ହେ, ବାହାରିପିବ କୁଆଡ଼େ ? ତମେ ସିନା ସବୁଦିନିଆ । ଆମର ଆଜି କେତେଡ଼ ଭାଗ୍ୟ, ପଧାନଙ୍କ ପାଦ ପୁଣି ଆମ ଦୁଆରେ

ପଡ଼ନ୍ତ । ତମେ ପାନ ଗୁଣ୍ଡି ବଟି । ମୁଁ ଏକ୍ଷୁଣି ଆସୁଛି ନା ।” ବାଜି ରାଉତର ଉମର ପଚାଶ ଉପରେ ହେବ । ତେବେ ଦାନ୍ତଗୁଡ଼ାକ ବେଶ୍ ଟାଣ ଅଛି । ମୁଣ୍ଡରେ କେଶଏ ବୋଲି ବାଳ । ବାରପଣ ପାଚି ଆସିଲାଣି । ଆଖି ବାଳଯାକ ବି ଧଳା ହୋଇଯାଇଛି । ନାକଟି ସରୁ, ସଳଖ । କାନ ଉପରେ ବେଢ଼ି ଘାସବୁଦା ପରି କେତେଏ କେଶା ଧଳାବାଳ । ଗୁମ୍ଫଟା ବି ପେଟଯାକେ ଧଳାବାଳରେ ଘୋଡ଼େଇ ହୋଇ ପଡ଼ିଛି । ଚମଡ଼ାଟା ଖରାରେ ସିଝି ପାଣିଖାଇ ଟାଁସା ଧରି ଗଲାଣି ।

ଜଳଖିଆ ବରାଦ କରିସାରି ବାଜି ରାଉତ ଝିଅ ଦେଖେଇବା- ପାଇଁ ଯୋଗାଡ଼ କରିବାକୁ ଘରଆଡ଼େ ବରାଦ କରିଦେଲା । ସାଇପଡ଼ିଶାରୁ ଦ'ଚାରି ଜଣ ମାଇପେ ଆସି ଜୁଟିଗଲେ । କିଏ ଝିଅର ମୁଣ୍ଡ ବାନ୍ଧିଦେଲା । ଆଉ କିଏ ଗୋଡ଼ଖଡ଼ୁ, ହାତଖଡ଼ୁ ପିନ୍ଧାଇ ଦେଲା । ପାଦରେ ଅଳତା, ଆଖିରେ କଜ୍ଜ୍ୱଳ, କପାଳରେ ଟିକିଲି ମାରି, ଖଣ୍ଡେ ନାଲି କୁମ୍ଭଶାଢ଼ୀ ପିନ୍ଧି ଦୁଲମଣି ଖାସା ଉଜଳି ଦିଶିଲା । ଝିଅ ଦେଖି ବରଜୁର ମନ ବି ମାନିଗଲା । ସତର ଅଠର ବର୍ଷର ଝିଅ । ଗୌରାଙ୍ଗ ପାଇଁ ନ ହେବ କାହିଁକି ? ବୁଢ଼ା ରାଉତ ଭଲ କରି କୁଟୁମ୍ବଙ୍କୁ ଚର୍ଚ୍ଚା କଲା । ଝିଅଟିର ଚାରି ମୁଖରେ ରହିବ । ଆଉ କଣ ଲୋଡ଼ା ? କଥା ତ ବଇନା ହୋଇଗଲା । ଆଉ କଣ ? ଆସନ୍ତା ମାଘ ମାସରେ ବାହାଘର । ବରଜୁ କହିଲା, “ତମ ଖୁସି, ତମେ ତମ ଝିଅଜ୍ୱାଇଁଙ୍କୁ ଯାହା ଦେବ । କିଛି ଦେଲେ ଖୁସି, ନ ଦେଲେ ଖୁସି । କଣ କହୁଛ, ମାମୁଁ ? ଆମର ତ ଝିଅ ପାଇଁ ସବୁ ଅଳଙ୍କାର ଅଛି ।”

ପଦଆ କିଛି କହିବା ଆଗରୁ ବୁଢ଼ା ରାଉତ ଜବାବ ଦେଲା, “ଦବାନବା କଥା କାହିଁକି ପଚାରୁଛ ? ମାଣିକଯୋଡ଼ା ଗାଁର ନନ୍ଦକିଶୋର

ଘର ତ ଜାଣିଚ । ଅଚଳାଚଳ ସମ୍ପତ୍ତି । ବ'ଷଠା ଭଲଲୋକ ଆସି ଫେରିଗଲେ । କେତେ ଫୁସୁଲାଇଲେ, ହାଣ୍ଡି ଦେବୁଁ, ଘୋଡ଼ା ଦେବୁଁ, ତାହା ବୋଲି ମୁଁ ଜାଣୁଁ ଜାଣୁଁ ଝିଅଟାକୁ ଫସେଇ ଦିଅନ୍ତି ? ନନ୍ଦ ବାଘୋଇ ମୋଠୁଁ ର ଆଠ କି ଦଶ ବର୍ଷ ବଡ଼ । ଆଠ ଦଶଟା ପିଲାଛୁଆ ନାତି ନାତୁଣୀ । ତେବେ କେତେ ଲୋକ କେତେ-ଭାବରେ ଆସି କହିଲେ, ବ'ସ ହେଲେ କଣ ହେଲା । କାଲି ସକାଳେ ସେ ତ ଆଖି ମୁଦିଲେ ତମ ଝିଅ ହବ ଘର ଗୋଟାକର ରାଣୀ । ଦୁଲାବୋଉକୁ ପଚାରିଲି, ସେ କହିଲା ଆମର ରାଣୀ ହବା ଲୋଡ଼ା ନାହିଁ । ମୋ ଝିଅ ପଛେ ଗରିବ ଘରେ ଧାନ କୁଟି କରି ପେଟ ପୋଷିବ । ତମେ ତ ଜାଣ ସାହୁପୁଅ, ଦିନ ଦିନ ଥର କଟକପୁରକୁ ଯାଇ ନେଉଟିଥିବ । ସେଠି କଣ ମୋର ଆଶା ଥିଲା କି ? ହୋ'ଉ ପଛ ହେଲେ କଣ ହବ, ଜୋଇଁଙ୍କର ତ ଏମିତି କାଣ୍ଡ ବ'ସ ହେଇ ନାହିଁ ।"

ବଢ଼େଇ କହିଲା, "ବ'ସ କଣ ପଚାରୁଛ ହେ । ସେ ତ ଆମ ଆଗର ପିଲାଟା । ତା କର୍ମ ମନ୍ଦ । ନହେଲେ କି ସେ ଆଜଯାକେ ବାହା ନ ହେଇ ବୁଲୁଥାନ୍ତା ।"

"ଘରେ ପରା ମୁଖିଆ ହେଇ କଣେ କେହି ରହିଲେ ନାହିଁ । ତେବେ ଯେତେ ଦିନ ବାଞ୍ଚ ସେ ସମ୍ଭାଳି ଗଲେ । ହଉ, ହଉ, ତମେ ଆସି ଖୁବ୍ ଭଲ କାମଟାଏ କଲ । ଘରଟାକୁ ଯାହା ଟିକିଏ ଆଇତି କରିଦେଲ ।"

ରାତି ହୋଇଗଲା । ଜଇନ୍ତରା ଛୋଟା କଥା ମନେ ପଡ଼ି ପଡ଼ିଆ ଉଦରାର ସ୍ମୃତି ଥିଲୁଥାଏ । ମନ୍ତ୍ର ଲୋଡ଼ିବାକୁ ବଇଦ ବଚେଇଲା ପରି ବୁଢ଼ା ଭାଇଚ ବ ଜଗର କରି ରାତିରେ ସେ ଧଳୁକି

ଘୁଞ୍ଚିଲେ ନାହିଁ '। ବଉଳ ରଖିବା ପାଇଁ ଟିକଏ ହେଲେ ଇଚ୍ଛା ନ ଥାଏ । ପଦଆ ଟିକଏ ଚିଡ଼ିଲା ଭଳି କହିଲା, "ସଞ୍ଜ ଅଧରେ ଘରେ ପଶିକି ଶୋଇବା ଛଡ଼ା ତ ଆଉ କିଛି କାମ ନାହିଁ । ଏଇଠି ଶୋଇ ପଡ଼ିଲେ କଣ ହବ ନ ? ସତ କଥା କହୁ ହଉଚି, ମୁଁ ଟିକଏ ଡରକୁଳିଆ ମଣିଷ । ସଞ୍ଜ ଅଧରେ ଅଗଣା ମଝିକୁ ବାହାରିଲେ ନସାନାକୋଳ୍ ନ ଉଠିଲେ ତ ଖୋଜ ପଦାକୁ କାଢ଼ିବ ନାହିଁ । ସତ କଥା ତ, ଏତେ ଲୁଚୁ ଛପା କାହିଁକି !"

ବଉଳ କହିଲା, "ଓଃ ସତେ ତମକୁ ଏତେ ଡର ?"

"ତମକୁ ତ ଜମାରୁ ଡର ଭୟ ନ ଥିବ ପରା । ଏକୁଟିଆ ଏତେବେଳେ ଦେଖି ଜଇନ୍ତସ ଚୋଠା କାଟେ ଖୁଲଗଲ, ଜାଣିବା ତା' ହେଲେ ପୁଅ ।"

ବଉଳ ଠୋ ଠୋ ହସି ଉଠିଲା । ପଦନ ସାହୁ ଆଗରୁ କେବେ ବଉଳର ଏଡ଼େ ଜୋର ହସ ଶୁଣି ନ ଥିଲା ।

× × × ×

ହରପୁର ଗାଁଠାର ଘରବୁଡ଼ାକ ଏତେ ଲଗାଲଗି ହେଲେ ହ ପ୍ରଧାନପଡ଼ା ଲକ ଲୋକଙ୍କ ଭିତରେ ମନ ମେଳ ନାହିଁ । ଜଣକ ମୁହଁ ଏଣିକ ହେଲେ ଆଉ ଜଣଙ୍କର ତେଣିକି । କାହାର ଶିର କେହି ଦେଖି ପାରନ୍ତି ନାହିଁ । ଶେଷରେ ସମସ୍ତେ ହରକତ ହୁଅନ୍ତି ।

ଗୋରୁ କାଇଦା ନ ହୋଇ ଏ ବର୍ଷ କୋଳଥ ଫସଲଟା ଉଜୁଡ଼ିଯିବା ଉପରେ । ସେଥିସାଙ୍ଗରେ ସୋରଷ, କୋଳଥ ଯେମିତି ଝଙ୍କା ହୋଇ ଲଟେଇଚି, କଅଁଳକୁ ଚାହିଁଲେ ମନେହୁଏ ସତେ ଅବା ଖାଲି ସୁନା ଜରିର ବନାରସ ଶାଢ଼ୀଟାଏ କେଜାଣି କେତେ ଦୂରଯାଏ ପଡ଼ିଛି । ଖେତ ଭିତରେ ଗୋରୁ

ଖୋଳ ପଡ଼ିଲେ କି ଫସଲ ଉଧାଏ ! ସ୍ତବରେ ଥରେ ଅଧେ କାହାରି ଓଳେଇ ଗାଈଟା ଖୁଣ୍ଟ ଉପାଡ଼ି କିଆରୀ ଭିତରେ ପଶିଲା । ତା ଦେଖାଦେଖି ଆଉ କଏ ଜାଣି ଶୁଣି କସରା ଦାମୁଡ଼ିଟାକୁ ସତ ଅଧରେ ଫିଟେଇଦେଲେ । ତା' ପରେ ଜଣ ଜଣ କରି ଆଉମାନେ ନିଜ କାନ୍ଥୁସାରାଙ୍କୁ ଛାଡ଼ିଲେ । ଖାଇବେ ଯେବେ ସବୁରି ଗୋରୁ ଖାଆନ୍ତୁ, କେଣେ ଦ'ଜଣଙ୍କର ଖାଇବେ କାହିଁକି ? ଶେଷକୁ ସେଇ ବଡ଼ ସେଇକୁ ଦେଖାଗଲା, ହରିପୁର ଗନ୍ଧରରେ ଗୋଟେ ଗୋରୁ କୋଳଥ କିଆରୀରେ ଚରୁଛନ୍ତି । ଏହା ପୁଣି ବଢଜୂ ପଧାନର ଝଡ ସହେ କେତେକେ ?

ସେ ଗାଁ ଭିତରେ ଘର ଘର ବୁଲି ସମସ୍ତଙ୍କୁ ନେହୁରା ହେଲା । ଜଣକୁ କହିଲେ ସେ ଆଉ ଜଣକର ଉଲଗା ହିଏ । ସେ ଆଗ ଗୋରୁ ଅଟକ ନ କଲେ ସେ' କାହିଁକି କରିବ ? ଫସଲ କରିବାକୁ ମୂଳ ଲଗୁଛି ସବୁଙ୍କ ତ ଖରଚ ହେଉଛି । ଗୋରୁ ଚରିବେ ଯେବେ ସବୁରି ଚରନ୍ତୁ ।

ବଢଜୂ ସମସ୍ତଙ୍କୁ କହି କହି ଥକିଲା । କିଏ କହିଲା, "ଏତେ ଖୋସାମଦ କରୁଛ କାହିଁକି, ପଧାନେ ? ସବୁ ଗୋରୁଙ୍କୁ କାଞ୍ଜି-ହାସାରେ ଥରେ ଦ'ଥର ପକେଇ ଦେଲେ ତ ନଠ ଗଲା ।" ସେତେବେ କେହି ଜଣେ ଆଗୁଆ ହୋଇ ବାହାରିଲେ ନାହିଁ । କେଉଁ ଗୋଟିକ ଭଲ ଯେ, କାହାକୁ କିଏ ଦୋଷ ଦେବ !

ସଞ୍ଜୀବ ସ୍ୱାଇଁ କହିଲେ, "ମରନ୍ତୁ ସବୁ ଶଳାଯାକ । ତୁମେ କାହିଁକି ବାର ଦୁଆର ଦଉଡ଼ୁଚ ପଧାନେ । ଏ ଶଳାଙ୍କୁ ଯେବେ ଭଲ ଚତି ଥାନ୍ତା, କମେଇଲା ଫସଲ କିଏ ଉଜାଡ଼େ ଭଲା !" ବଢଜୂର ମନ

ମାନନ୍ତି ନାହିଁ । କେତେ ଲୋକ ତାହା ଆଗରେ ସ୍ୱର ଉଠେଇ ନୋହାଇବାରୁ ସେ ଚାଲିଗଲା ପରେ ପଛରେ ଟାହି ଟାପରା କରନ୍ତି, "କଉ ବୁଢ଼ୁଆଁଙ୍କୁ କିଆଁ ଜାଣୁ ନାହୁଁ ? ତମେ ତ କେଇଟା ଦିନ ପାଇଁ ବନ୍ଧୁ ଘର ଆଇଚ । ତମର ଜାଇଁକି ଏତେ ଚିନ୍ତା ?"

କେତେକ ଦରଜୁର ଚିନ୍ତା ବଢ଼ିଲା ସିନା କମିଲା ନାହିଁ । ସବୁଦି ଏମିତି ଅବୁଝାମଣା ମଣିଷ କଣ ଗାଁ ଗୋଟାକର ଫସଲ ନଷ୍ଟ ହେବ । ଦରଜୁ ହାତରେ କଣ କିଛି ହେଲେ ଉପାୟ ନାହିଁ ? ଉପାୟ ଖୋଜି ଖୋଜି ଦୁଇ ରାତି ତାର ପଲକ ପଡ଼ିଲା ନାହିଁ । ଆଖି ଆଗରେ ନାଚି ଉଠିଲା ସ୍ୱତ ଅଧରେ ଗୋଟାଏ ଭୟାନକ ଦୃଶ୍ୟ— ହରିପୁର ଗାଁର ଗହ୍ୱର ଗୋଟାଏ ଅନାବାଦୀ ମରୁଭୂଇଁ ହୋଇ ପଡ଼ିଛି, ସେଥିରେ ଆଉ କୁଶ କଅଁଳିବାକୁ ନାହିଁ । ପୁଣି ହରିପୁରର ସେଇ ଉଦାହିଆ ଗୋରୁ ଗୋଠଟା ପାଟଳି, ଆମ୍ବଝର, ଓଡ଼ଗାଁ, ଫଙ୍କାର-ପଡ଼ା ହୋଇଁ ଶେଷରେ ପଧାନପଡ଼ାର ଗହ୍ୱରକୁ ବି ପଦା କରି ଦେଲେଣି । ଦରଜୁର ତାକୁଛି ଚଳପାପାକେ ମାଘ ମାସ ଜାଡ଼ରେ ବି ତାତି ଉଠେ । ତମକ ପଡ଼େ ସେ ବିଛଣାରେ ବସେ । କଣ କରିବ ବସିରେ । କାହାକୁ ଆଉ କହିବ ?

ଅନିଦ୍ରା ହୋଇ ବିଛଣାରେ କେତେ ବେଳ ସେ ପଡ଼ି ରହିବ ! ନିଶା ଗର୍ଜୁଛି । ସ୍ୱାଇଁ ବାଡ଼ ବାଉଁଶ ବୁଦା ଗହଳରୁ ପହରିକିଆ ଚଢ଼େଇ ଅଧରତିଆ ଜାହାଲି ବଜେଇଲେଣି । ଅନ୍ଧାର ପକ୍ଷର ଦଶମୀ ଜହ୍ନ ତଳରେ ଧଳା ବୁଢ଼ୀଆ ଭଳି ଗୋଟାଏ ପାଉଁଶିଆ କୁହୁଡ଼ି ଝୁଲି ପଡ଼ିଥାଏ । ସୁରଆଡ଼ର ନିଶୂନତା ମଧ୍ୟରେ ହରିପୁର ଗହ୍ୱର ମଝିରେ ଏକା ହୋଇ ଏ କିଏ ବୁଲୁଛି ? ଭୂତ ନା ମଣିଷ ? ମୁଣ୍ଡରେ ଠେକା ହାତରେ ଠେଙ୍ଗାଟା ଧରି ଟଙ୍ଗ ଟଙ୍ଗ ହୋଇ ସେ

କଥାଶିଆକୁ କଥାଶିଆ ଗୋଡ଼ୁ ଅଠେଇ ଯାଉଛି । ଶୀତ କଷ୍ଟରେ ରକ୍ତ ଭଳି ବାଲୁଆ ରଡ଼ ଗୁଡ଼ୁଛି । ଏହା ମୁର୍ତ୍ତିଟିର କାନକୁ କଣ୍ଟୁ ସେମିତ ଶୁଣା ଯାଉ ନାହିଁ । ଦେହ ଗୋଟାକ ଓଦା ସରସର ହେଲଣି । କୁହୁଡ଼ି ଅନ୍ଧାରରେ ଉଣ୍ଡି ଉଣ୍ଡି ସେ ଖାଲି ଗୋଡ଼ୁ ଖୋଜିବାରେ ଲାଗିଛି । ଆଜି ସୁଲଟା ସେମିତି ଶୀତ ରାତିର ଗୋଟାଏ ଯମ ।

ଝୁହୁଁ ଝୁହୁଁ ସେ ହଜିପୁର ଗମ୍ଭାର ଗୋଟାକ ବୁଲିଆସି ଗୋଡ଼ୁ-ଗୁଡ଼ିକୁ ଠୁଳ କଲା । ପହରକିଆ ଚଢ଼େଇ ଶେଷ ରାତିର ଜାହାଳୀ ବଜେଇଲେ । କେଉଁଠି ସାହାର ଚୁଡ଼ାକୁଟା ଦୁମ୍‌କ ଗାଁ ଗୋଟାକୁ ଦୁଲୁକେଇ ଦେଉଛି । ପଶ୍ଚିମ ଷାଠିଏ ଗୋଡ଼ୁଙ୍କୁ ଅଣ୍ଟେଇ ସେହି ମୁର୍ତ୍ତିଟି ଗାଁ ଭିତରକୁ ଆଣୁଛି । ମାଘ ସ୍ନାନ ସାରି ଜଣକେତେ ବିଧବା ମାଇପେ ଉଲ ମନ୍ଦିରରେ ବସି ଗଉରୀ ଫୁଲ ତୋଳୁଛନ୍ତି, ମହାଦେବଙ୍କୁ ଲଗି କରିବେ । ତାଙ୍କ ସାଥିରେ କେତୋଟି ସାନ ପିଲା ଓ ସଧବା ଝିଅ ବୋହୂମାନଙ୍କୁ ଗାଧୋଇ ଫୁଲ ତୋଳୁଛନ୍ତି । ଗୋଡ଼ୁଗୋଠା ସେଇ କଥାଶିଆବାଟେ ଗଣିଲା । ମାଇପି ପିଲା ଗୁଡ଼ିକ ଉଠି ପଡ଼ି ଏକ ପାଖିଆ ହୋଇଗଲେ । ପଛରେ ଡଗଡଗ ଜଳୁଥିବା ମଶିଣଟି ତେ ନେ ତାକ ଗୁଡ଼ ଗୋଡ଼ୁ ଅଡ଼ାଉ ଥାଏ ।

ଜଣେ ବିଧବା ଜବା ପଚାରିଲା, 'କିଏ ସେ ମ ଏଇଟା ? ତତେ କଣ ମଣିଷ ଦିଶୁ ନାହାନ୍ତି କି ? ଏତେକ ସକାଳୁ ଗୋଡ଼ୁ ଛଡ଼ ଲାଗିଚୁ ?"

ଲୋକଟିକୁ ଦୁରରୁ ଚିହ୍ନି ଆଉ ଜଣେ କହିଲା, "ମଲା ଏତ ବଉରିଆ ଗଉଡ଼ ହବ ପରା ! କୋଉଠି ଚରେଇବ କୋଲା ତାକୁ କଣ ରାତିରେ ନିଦ ଅଛି କି ? ତଉ ଭଲଥା, ଝଡ ହେଲେ ତୋ ମଜା ନିକଳି ଯିବନି କି ?"

ନୀଳକଣ୍ଠା ଏକା ନିଶ୍ବାସରେ ଗୋଠ ପଛେ ପଛେ ଧାଇଁଥାଏ । ସେ ଗୋରୁ ଚଢ଼ିବା ଛଡ଼ା ଦୁନିଆ ଭିତରେ ଏତକୁଣି ଆଉ ଯେମିତି କିଛି ଜାଣେ ନାହିଁ ।

ମଥୁରା ସାହୁଙ୍କ ଝିଅ ଜମା ବାଧବା ଦୁହିଁଙ୍କି ଚପେଇଦେଇ କହିଲା, "ଯାଃ, ବଡ଼ ନାକସା ମଣିଷ ଗୁଡ଼ା ତମେ । କାହାକୁ ଯେ କଣ କୁହ, ତମ କଥାର ବାଗ ସାଗ ନାହିଁ ।"

"କାଇଁକି, ସେ କ'ଣ ବହୁଆ ଗଜଡ଼ ନୁହଁ ?"

"ତୁନି ହ, ଆଉ ବେଶୀ ଗୁଡ଼ାଏ କହନା । ତୁ ଯେଉଁ ମଣିଷ ଚିହ୍ନୁଚି କି ?"

"ତୁ କେମିତି ଚିହ୍ନୁଚୁ, କହିଲୁ ଭଲ କିଏ ସେ ?" ଜମା କହିଲା, "ମତେ ଲାଗୁଚି, କେଣେ ଘରକୁ ଯଉଁ ଲୋକ ଜଣକ ସ୍ବର ମାସ ହେଲା ଆସିଚି ତା'ର ଭଳି ।"

"ତୁ ସ୍ବର ଠିକଣା କଥା କହୁଚୁ ଜମା, ସେ କାହିଁକି ଏତେ ପାହାନ୍ତରୁ ଗୋରୁ ଅଡ଼ନ୍ତା କଲେ ?" ସମସ୍ତେ ହସି ପୁଣି ଫୁଲ ତୋଳିଲେ ।

ସତୁରି ପଞ୍ଚସ୍ତରି ବର୍ଷର ବୁଢ଼ା ବନମାଳୀ ମିଶ୍ରେ କେତେ-କେତୁଁ ମାଘସ୍ନାନ ସାରି କୋଚର କାଣ୍ଠିଆ ଖଣ୍ଡେ ପିନ୍ଧି କପାଳେଶ୍ବର ଦେଉଳକୁ ଯାଉଥିଲେ । ଶୀତରେ ଦୁଇ ପାଟି ଠକ ଠକ ହେଉ କେତେ କଣ ବୋଲି ଲାଗିଛନ୍ତି । "ନାସପୂର୍ଣଂ ନମୋସ୍ତୁତ୍ୟଂ ନରଂ ଚୈବ ନରୋତ୍ତମଂ, ଓଁ ନମଃ ଶିବାୟ, ନମଃ ଶିବାୟ, ନମଃ ଶିବାୟ ।" ଗୋରୁପଲ ଦେଖି ତାଙ୍କ ମନ୍ତ୍ର ପାଠ ବନ୍ଦ ହୋଇଗଲା । ପାଟି କରି ଉଠିଲେ, "ଆରେ ଏ ଗୋରୁ ଗୁଡ଼ା ଏତେବେଳେ କୁଆଡ଼ୁ

ଆସିଲେ ?" ମଝିରେ ଠେଙ୍ଗାଧରି ଆସୁଥିବା ସେବକ ଜଣକ ତାଙ୍କୁ ଦଣ୍ଡବତ ହେଲା । ମିଶ୍ରେ ଆଶୀର୍ବାଦ କଲେ"ସର୍ବାରିଷ୍ଟ ଶାନ୍ତି ଭବତୁ । କିଏ ରେ ତୁ ? ଏଡ଼େ ପାହାନ୍ତାରୁ ଗୋରୁ ଚରେଇ ବାହାରିଚୁ । ନରେ, ଏ ଗାଁଟାକୁ ଉଚ୍ଛନ୍ନ କରିଦେବ କି ରେ ? ଧାନଚକ ଯାହା କଲ, କୋଳଥ ପୁଞ୍ଜାକ ବି ସାରିଲ । ବଇଁଶ ବୁଡ଼ିଯିବ ଯେ, ବଇଁଶ ବୁଡ଼ିଯିବ । ସାତ ପୁରୁଷକୁ ପାଣି ଦେବାକୁ କୁଳରେ କେହି ରହିବେ ନାହିଁଟି ? ଜାଣିଥା, ବ୍ରହ୍ମ ବଚନ ଏ । ଓଁ ନମଃ ଶିବାୟ" । କହି କହି ବୁଢ଼ା ଗୋସେଇଁ ଚାଲିଲେ ।

ପାଣି ବୁନ୍ଦାଏଟା ବି ଗୁଣ୍ଡ ପଡ଼ୁଥିଲା । ଅଧା ଜହ୍ନଟା ପଶ୍ଚିମକୁ ଢଳ ଫିକା ଦିଶିଲାଣି । ପୂର୍ବ ଦିଗରେ କୁଆଁତାରାଟା ବି ମଉଳି ଯାଉଛି । ଗୋରୁଯାକ ଗାଁ ଦାଣ୍ଡକୁ ଆସି ସେଥୁ ଗୁହାଳ ଚାଳି ଭିତରକୁ ପଶିଗଲେ । ଗାଁ ମାଇପେ ବାସି ଆଉଟ କରିବାକୁ ବଡ଼ ଭୋରରୁ ଉଠି କିଏ ଓଳଉଥିଲେ ଦାଣ୍ଡ, ଆଉ କିଏ ଲିପୁଥିଲେ ପିଣ୍ଡା ।

କଥାଟି ଲୁଚି ରହିଲା ନାହିଁ । ମଦନ ସାହୁ ଇସ୍କୁଲ ବାଟରେ ମୁଢ଼ି ଉଖୁଡ଼ା ବିକିବାକୁ ଯାଇ ମାଷ୍ଟରଙ୍କୁ କହିଲା, "ବୁଝିଲ ଆପଣେ, ଇଆଙ୍କୁ କହନ୍ତି ବଇଦ ବେଠିଆ । ଗାଁ ଯାକ ତ ଗୋରୁ ଗୁଡ଼ା ଫସଲ ଚରଉଛନ୍ତି, ତେବେ କାହିଁକି ଦଲା ଘଟରେ ନଦ ନାହିଁ ?"

ଛାତ୍ରମାନଙ୍କୁ ଦେଖି ମାଷ୍ଟ୍ରେ ଖସ ପୋଉଁଥିଲେ । କହିଲେ, ସେ କଥା ମାସ୍ତୁଆ ନୁହେଁ । ଆମ ଶାସ୍ତ୍ର ସବୁ କହୁଛି—ପରୋପ-କାରାୟ ସ୍ୱର୍ଗାୟ । ପର ଉପକାର କଲେ ସ୍ୱର୍ଗ ମିଳେ ।"

"ମୁଁ ତ ମୂରୁଖ ଗୋଡ଼ଗଣଶ । ମୁଁ ତମକୁ ବୁଝେଇବି କଣ, ଆପଣେ । ସ୍ୱାକୁ କହନ୍ତି ଗରଭପୁରାର ! ମୁଁ ଯେବେ ତମ

ଉପୁଗାର ନ ବୁଝିଲ ସେମିତ ଉପୁଗାର ତମେ କଲେ କେତେ ନ କଲେ କେତେ ? ଉଲଟି ଲୋକେ ଦସୁଚନ୍ତି ପର । କହିବ କଣ ତମକୁ !”

ଗୁଣ୍ଡି ପ୍ରଷ୍ଟ ପକରୁ ମକରୁ ଷ୍ଟନଟା ଟାଳି ମାରିଦେଇ ମାଷ୍ଟର କହନ୍ତି—“ହସିଲେ ହସନ୍ତୁ ହେ ସାହୁପୁଅ । ମତେ କଣ ଲୋକେ ହସୁ ନ ଥାନ୍ତି କି ? ଜାଣିଣି ଲୋକେ ସେ ଦିନ ପରି ମୋ ସାଙ୍ଗରେ ବଳିଆ ଜଣ ଧାନ ଗୋଟେଇବ ବୋଲି ତା ପୁଅଟାକୁ ଇସ୍କୁଲ ଘରୁ ନେଇ ଗିନଗଲା । ମୁଁ ଯେତେ କହିଲି ଉଲଟି ଇହାଙ୍କ କହିଲା—“ତମେ ନଇଁ ଆସୁନ, ଧାନ କାଟିବ । ପାଠ ପଢ଼ିକରି ଆମେ କେଉଁ ସ୍ୱର୍ଗକୁ ଯିବୁଁ, ସେ କଥା ପଚ୍ଛେ ନ ହେଲା ।” ଆଚ୍ଛା, କହିଲ ଦେଖି ସାହୁଏ, ଏ ଗାଁ ପିଲାଙ୍କୁ ଆମେ ଦି’ଅକ୍ଷର ପଢ଼େଇ କଣ କିଛି ହେଲେ ଉପକାର କରୁନୁଁ ?”

ଗତ ଅଧରେ ବରଜୁ ପଧାନ ଗୋରୁ ଅଟକେଇବା କଥା ଗାଁଭିତରେ କେତେ ଲୋକ ଠୁପୁରୁଠାପୁର ହେଲେ, ଥଟ୍ଟା ତାମସା କଲେ । ପୁରୁଖା ଲୋକେ ବରଜୁକୁ ଲାକ୍ଷଫ କରି କହିଲେ । ତହିଁ ପରଗତ ପୁଣି ସେହି କଥା ହେଲା । କେତେଜଣ ଗୋରୁ ଛାଡ଼ିଲେ । ବରଜୁ ପୁଣି ଗତ ଅଧକୁ ବାହାର ଗୋରୁ ଅଟେଇଲା । ଦି’ଦିନ ତିନି ଦିନ, ଯୁଝା ଦିନ—ଏହିପରି ଚାଲିଲା । ଜଣ ଜଣ କରି ସେଥି ଗୋରୁ ବାନ୍ଧି ରଖିଲେ । ବରଜୁ ସାଙ୍ଗକୁ ଦି ଗତ ଅଧରେ ଗୋରୁ ଢଡ଼ିବାକୁ ଆଉକି ପାଞ୍ଚ ସାତ ଜଣ ଯୁବେ ବାହାରି ପଡ଼ିଲେ । ବରଜୁ ସମସ୍ତଙ୍କୁ ବୁଝେଇ ଦେଲା, ଯେଉଁମାନେ ସବୁରି ଥଟ୍ଟା ତାମସା ଶୁଣି ପାଟି ଛୁଣ୍ଡ ନ କରି କାମ କରିବେ, ସେହିମାନେ ଖାଲି ଆସନ୍ତୁ । ଶେଷରେ ହଟ୍ଟପୁର ଗାଁର ଯେତେ ଲୋକ ଗୋରୁ ଛାଡ଼ୁଥିଲେ,

ତାଙ୍କ ନିଜ ଲାଜ ନିଜକୁ ଖାଇଲା । ଗାଁ ଗୋଟାକର ଗୋରୁ ଅଟକ ହୋଇଗଲେ । ଲୋକେ ତାଜୁବ୍ ହେଲେ, ଆଜଯାକେ ହରିପୁର ଗାଁରେ ଯେଉଁ କଥା ଶୁଣା ନଥିଲା ତାହା ପୁଣି ହେଲା କିମିତି ! ପଦ ପଦକେ ଯେଉଁ ଗାଁରେ ମାଲି ମକଦ୍ଦମା, ହାତ ପାଉଣାରେ ଥାନା ରହିଚି ବୋଲି ପୁଲିସ ଆଗରେ ଗୁହାରି । କିଏ ଭଲା କେବେ ସସ୍ୱର କରିଥିଲା ସେଇ ଗାଁରେ ଏଭଳି କାମଟାଏ ହୋଇପାରିବ ବୋଲି !

ବରଜୁ ପଧାନର ଖାତିରଟା ଟିକିଏ ବଢ଼ିଗଲା । ଗାଁ ଭିତରେ କେତେ ଅଚିହ୍ନା ଲୋକ ତାକୁ ଚିହ୍ନିଲେ । ମଣିଷଟା ଏକବାଗିଆ ହେଉ କି ଯାହା ହେଉ, ଏମିତି ଗୋଟାଏ କାମ ତ କରି ପାରିଲା !

ଆସନ୍ତା ମାଘ ସତର ଦିନ ତିଥିରେ ଗୌରୀଙ୍କର ବାହାଘର । ଆଜି ତ ଦିନ ପନ୍ଦର କୋଡ଼ିଏଟା ରହିଲା । ହାସ୍ତବୋଉଙ୍କୁ ପୁଣି ତର ମିଳିବ କୁଆଡ଼ୁ ? ଆଗ ବଢ଼ଜାଇ ଅନୁକୂଳ । ଦଶ ବଟା ମୁଗ ଉଗଡ଼ାରେ ତାକୁ ବେଳ ଅଣ୍ଟୁ ନାହିଁ । ଦ'ଦ'ଟା ଝିଅ ବାହାଘର କରିଛୁ । ତାକୁ ଅବା କଉଁକଥା ଅଜଣା ? ପିଇକାର ବୋଝ ଆଗ ଦିଆ ନିଆ ଚାଲିଗଲା । ବୋଦୂଘରକୁ ପାନିଆ, ଫନ୍ଦୁଆ, ଶାଢ଼ୀ, ସିନ୍ଦୂର, ଅଳତା, ସବୁ ଏମିତି ଝଞ୍ଜି ଖାଞ୍ଜି ପଠେଇଛି ଯେ, ଗଜତ ଘରେ କହୁଲେ, ଗଜରାଜ ଆପଣା ମା ଭଉଣୀ ଥିଲେ ବି ଏଥିରୁ ଅଧିକା କରି ପାରନ୍ତେ ନାହିଁ । ଗଞ୍ଜିବ ପାଇଁ କରିବ ନାହିଁ ତ ଆଉ କରିବ କାହାପାଇଁ ? ସେ କଣ ତାକୁ ନିଜ ମା ଭଉଣୀଠାରୁ କେବେ ଊଣା କରି ଦେଖିଛି କି ?

ବରଜୁ କହେ, "ନିଜ ଝିଅ ବାହାଘରକୁ ତ କାହିଁ ଏତେ ଗୁଡ଼ିଏ ତତ୍ପର ହଉ ନ ଥିଲ !"

ହାସ୍ତବୋଉ ବୁଝାଇଦିଏ, "ଆହେ, ନିଜ ଝିଅ କଥା ନିଆରା । କଉଁଠି କିଛିଏ ଊଣା ପଡ଼ିଗଲେ, ସେଥିକି ଲୋକଙ୍କ କଥା ସୁହାଯିବ । ଗଜରାଜ ବାହାଘରେ ସେ କଥା ହେଲେ ଲୋକ କହିବେ କଣ ନା, ଯେତେହେଲେ ତ ପର । କଉଁଆପଣାର ହେଇଛନ୍ତି ଯେ । ପୁଣି ସେ ତ ଆମକୁ ଆପଣାରୁ ବଳି କରିଚନ୍ତି ।"

ହାସ୍ତବୋଉ କଥାଶୁଣି ବରଜୁ ମନେ ମନେ ଖୁସି ହୋଇ- ଯାଏ, ତେବେ ମୁହଁ ଉପରେ କିଛି କହେ ନାହିଁ । କେବେ କେମିତି ଚିଡ଼ିଯାଇ କହିପକାଏ, "ସବୁବେଳେ ମୁଁ ତମର ଏତେ ବରାଦ ତୁଲେଇ ପାରିବି ନାହିଁ । ବାହାଘର ପାଇଁ କାହିଁ ଅଛି । ତମକୁ ଏଇ ଦିନୁ ଗାଳିରେ ନିଦ ନାହିଁ ।"

"ମ, ଭଜନ ଆଉ କାହାଘରେ କି । କାନ କୁଣ୍ଡଳ କୁଣ୍ଡଳ ତ ପହଞ୍ଚିଯିବ । ଆଉ କଣ ସ୍ୱର ଭଜନ ଆଗରୁ ତମେ ସବୁ ସଜଳ କରି ପକେଇବ କି ।"

"କରିବ କି ନାଇଁ ସେତେବେଳେ ସିନା ଦେଖିବ ।"

"ହଁ, ଦେଖିବ ସବୁ । ସୁନା କାହାଘରକୁ ଯେମିତି କହୁ କହୁ ଶେଷ ବେଳକୁ ପାଞ୍ଚଖଣ୍ଡେ ମିଳିଲା ନାଇଁ ଯେ ଝିଅକୁ ମୋର ନୂଆ ଲୁଗାରେ ହଳଦୀ ମଡ଼େଇ ପିନ୍ଧେଇଲି । ଆଉ କାହା ପାଖେ ନଜ କାହିଁଣ ଦେଖେଇବ ଯେ, ସେ ଶୁଣିବ ।" ବନ୍ଧୁ ହସି ହସି ବାହାରିଯାଏ ।

ଗୌରୀ କୁଆଡ଼ୁ ଆସି ହଠାତ୍ କହିଲା, "ସ୍ୱଜନ, କାହାଘର ହବ ନାହିଁ ।"

ତମଙ୍କ ସହ ହାସ୍ୟବୋଧ ଲୁହିଁଲା । ଗୌରୀ ମୁହଁଟା ଅଭିମାନରେ ଫୁଲିଯାଇଛି । "କମଳ କାଳଭୁଣ୍ଡା ମଣିଷ କି ତମେ ? ବୋହୂ ବେଦୀରେ ବସିଲାଯାକେ କଣ ଏଇ କଥା କହୁ ହଉଥିବ ? ତମର ଏକା କାହାଘର ନା ଆଉ କାହାରି ହୁଏ ନ ?"

ଗୌରୀ ଜିଦ୍ କଲା, "କାହାଘର ତ ହବ ନାହିଁ । ତମେ କହୁଚ କଣ କହୁଥାଅ ।"

"କାଇଁକି, କଣ ପୁଣି ହେଲା କି ?"

"ହବ ଆଉ କଣ । ସବୁଠି ଘରକୁ ତ ଗୁଆ ନିମନ୍ତ୍ରଣ ଚାଲିଲା । ତାଙ୍କ ସୁନା କି ବୋଷ କରିଥିଲେ କି ?"

ହସିଦେଇ ହାସ୍ୟବୋଧ କହିଲା, "ଏଇ କଥା କହୁଚ ?

ତମ ଘର ପର ସବୁ କରିବାକୁ । ମୋର କି ଦୋଷ ? ହେଲେ ତେବେ, ତାଙ୍କୁ ଯେବେ ନେଉଛ, ମତେ କଣ ମୋ ଝିଅ ପିଲା ଲମ୍ବଚଣ୍ଡ କି ?"

ହାସ ସୁନା ଘରକୁ ନିମନ୍ତ୍ରଣ ଚାଲିଲା । ହାସ ବୋଉର ବସିବ ମୁତାବକ ସବୁ ହେଉଛି । ଗୌରାଙ୍ଗର ପାଲିଙ୍କି ଚଢ଼ା ବାହାଘର ହେବ । କନ୍ୟା ପକ୍ଷର ତ ପୋଡ଼ୁଆଁ ଝିଅ । ସେ ବା ଅମଙ୍ଗ ହେବ କାହିଁକି ? ବାଜା ବଜନ୍ତ୍ରି ବନ୍ଧୁଯାତ୍ରୀ ଚାରି ଚାରି ପଚାଶ ଶରଣ ହେବେ । ଏଇ କେତେ ଜଣଙ୍କୁ ସେ କଣ ତଣ୍ଡା କରି ଖୁଆଇ ଦେଇ ପାରିବ ନାହିଁ !

ଘୁଞ୍ଚୁଁ ଘୁଞ୍ଚୁଁ ଦିନ ଆଖିର ହୋଇ ପଡ଼ିଲା । କେଉଁଠି ପାଲିଙ୍କି, କେଉଁଠି ବାଜାବାଲା, ପୁରୋହିତ, ନାପିତ, ଭଣ୍ଡାରୀ, ଗଉଡ଼ ଠିକଣା କରିବାରେ ବରଜୁ ଏତେସ ହଇରାଣ ହୋଇ ପଡ଼ିଲାଣି । ପୁଣି ପାନ ମସଲା, ଲୁଗା ପଟା ତ କଥା ସରି ନାହିଁ । ଯାହାହେଉ, ଚନ୍ଦଆ ମାମୁଁଟି ତାକୁ ବଡ଼ ସୁମତ ଦଉଚି । ନହେଲେ ଏତେ ଧାଁ ଧପଡ଼କୁ ସେ ଜଣେ ଲୋକ କା ପାରନ୍ତା କୁଆଡ଼ୁ ? ଆଜ ପୁଣି ସେହି ଚନ୍ଦଆକୁ ଡାକି ସଜବାପାଇଁ ହାଟକୁ ବାହାରିଛି । ଯାହା ଯାହା ଆସିବ ପଦପଦ କରି ହାରାବୋଉଠାରୁ ସବୁ ଶୁଣି ସେ ତାଳପତ୍ର ଖଣ୍ଡିକରେ ଟିପି ଆଣିଛି । ଚନ୍ଦଆକୁ ହାସବୋଉ ଆଉ ଦୁଏ ନାହିଁ । ତାକୁ ତାଗିଦା କରି ଦେଇଛି—"ହଁ, ତମେ ନିଜେ ସବୁ ଦେଖାଚାହାଁ କରି କିଣିବ । ନହେଲେ ତ ତାଙ୍କର ଯେମିତି ଭୋଳା ମନ, ଜାଣ । ସେ ଯାହା ପାରିବେ ଆଣିବେ । ଯାହା ନ ପାରିବେ ମୋ ଉପରେ ନେଇକି ଝିଙ୍କେଇ ଦେବେ ।"

ମଙ୍ଗଳବାର ହାଟଟା ହରିପୁରର ସବୁଠୁଁ ବଡ଼ ହାଟ । ଏ ପାଖ

ପୁଣି ବାହାଘର ପଡ଼ ଯେ, ଲୋକ ଏକାବେଳକେ ଜନ୍ତାଜନ୍ତ । ଯେଉଁ ଦୋକାନକୁ ଯାଅ, ମଣିଷରେ ରାହା ମିଳୁ ନାହିଁ । ଜନସଙ୍ଖ୍ୟା ବି ଖୁବ୍ ବଢ଼ି ଯାଇଛି । ହାଟ ଭିତରେ ପଶି ବରଜୁ କହିଲା, "ଆଜି କଣ ସଉଦା କରି ପାରିବାନି କି ? ଏତେ ସକାଳ ଆସି ବି ଆଗରୁ ଏତେ ଲୋକ ଜମା ହୋଇ ଗଲେଣି ।"

ପଦଆ କହିଲା, "ଏସବୁ ଦୂର ବାଟରୁ ଆଇଚନ୍ତି, ସକାଳ ସକାଳ ଫେରି ପଡ଼ିବେ ଯେ, ଆଜି ସଉଦା ନ କଲେ ଆମକୁ ଆଉ ଦିନ ନାହିଁ କି ? ପରଦିନ ପରା ମଙ୍ଗଳ । ଶୁକ୍ରବାର ବାହାଘର ।"

ପଛରୁ କାହାର ଚିହ୍ନା ତୁଣ୍ଡ ଶୁଣାଗଲା, "ବରଜୁଆ ଭାଇ ! ଆମକୁ ସବୁ ଏକାବେଳେ ପାସୋରି ଦେଲ ପରା !"

"କି ରେ ଯଦୁ" କହି, ଯଦୁ ଭଲେଇ ଦଣ୍ଡବତ ହେଉଁ ହେଉଁ ବରଜୁ ତାକୁ କୁଣ୍ଢେଇ ପକେଇଲା । ଯଦୁ ପଛକୁ ଜଣ ଖଟେଇ, ହବସ୍ଥିତାର ଧଇମା ଲୋକ ଆସି ପହଞ୍ଚିଗଲେ । ବରଜୁ ଖୁସି ହୋଇ କହିଲା, "କି ରେ ଆଜି କଣ ସମସ୍ତେ ବାହାର ଆସିଚ ?" ଶୁଣିଲା, କାହାର ଝିଅ ପୁଅଣି, କାହା ଶଳା ବାହାଘରକୁ ବନ୍ଧୁ ବେଶର ପିଲ । ତାହାର ଅବା ଭଉଣୀ ବାହା ହେବ । ସବୁରି ସଙ୍ଗେ ସୁଖ ଦୁଃଖ ହେଲା । ଗାଁର ହାଲଚାଲ ବୁଝିଲା । ପୁଣି ସେଇ ପୁରୁଣା ମୁହଁଗୁଡ଼ାକୁ ଦେଖି ଘୁଡ଼ାବାପାଇଁ ତାହାର ମନ ଜମାରୁ ମଙ୍ଗୁ ନ ଥାଏ ।

ଯଦୁ କହିଲା, "ବରଜୁଆ ଭାଇ, ଚୁପ ଯେନାଟି ସ୍କୁଲଗଲା ।" ବରଜୁର ମୁହଁଟା କଳାକାଠ ପଡ଼ିଗଲା, "କଣ କହୁଚୁ, ଚୁପ ସ୍କୁଲଗଲା !"

"ହଁ ଭାଇ ହେଇ ପରା ତା'ପୁଅ ଆସିଛି । ଦଶଭୂତ କରିଆ କଣିକ ବୋଲି, ଆଜକୁ ଆଠ ଦଶ ଦିନ ହେଲାଣି ।"

"ଆଃ, ମତେ କେଞ୍ଚୁ ହେଲେ ଟିକଏ ବାତାଜ ଦେଇ ନାହିଁ ! କଣ ହେଇ ଥେଲା ରେ ?"

"କିଛି ନାହିଁ ଭାଇ, ଖାଲି ତ ଜର । ବଡ଼େ ବଡ଼େ ଜର ରଖି ଲୋକେ କଣ କାମଦାମ କରୁ ନାହାନ୍ତି ! ଆମେ ହେଲେ ଆଗରୁ କିଛି ଜାଣି ପାରିଲୁଁ ? ସକାଳେ ମୁଁ ଦାମୁହିହଳକ ଆଣି ଦାଣ୍ଡ ଖଣ୍ଡରେ ବାନ୍ଧୁଛି, କିଏ ଗୋଟିଏ ଆସି କହିଲା, ରୁପ ସେନା ଜୋକଜର । ଯାଇ ଦେଖିଲା ବେଳକୁ ଆଉ ତ ଶବଦ ବାହାରୁ ନାଇଁ । କାହାର କଣ ଗଲା, ତା' ପିଲା ଦୋ'ଟି ତ ଅଥାକା ହେଲେ । ସମସ୍ତେ ଷସ୍ଥର କଲୁ, ମଣିଷ ତ ଗଲା, ତାର କଣ ଅଛି ଯେ, ବାଙ୍କା ଗୁଣ୍ଡାଏ ଭାଇଭତ କରିବ । ହରି ମିସ୍ତ୍ରେ କହିଲେ, କାହିଁକି ତାର ତ ଦ'ମାଣ ଜମି ଅଛି । ପୁଅ ଯୋଡ଼ା ଯୋଡ଼ା, ଭାଇଭତ ବୁଡ଼େଇବେ, ଅଣଶୁଧିଆ ରହିବେ ? କାହିଁକି ଜମି ଦାଶଗୁଣ୍ଠ ଭିକ ଦାଉ ନାହାନ୍ତି ? ତମେ ତ ଆସିଲ, ଗାଁରେ ଆଉ କିଏ ଅଛି ଯେ, କାହାକୁ କହିବୁଁ ?"

"କଣ ପୁଣି କଲ ଶେଷରେ ?" ବରଜୁ ପଚ୍ଛିଲା ।

"ଆଉ କରିବୁଁ କଣ ଭାଇ, ତମେ ଯାହା ଶିଖେଇଥିଲ । ମିସ୍ତ୍ରଙ୍କ ଇଚ୍ଛା ଥାଏ, ତାଙ୍କର ଦୁଆରେ ଯାଇ ଗୋଡ଼ ଧରି ଛୁଡ଼ା ହେଲୁ । ମିସ୍ତ୍ରେ ତ କିଛି ଆମ ଭାଇ ନୁହନ୍ତି । ସବୁ ଭାଇ ଏକାଠି ବସି ଷସ୍ଥର କଲୁଁ । ଯେ ଯାହା ପାରିଲା, ସାହାଯ୍ୟ ଦେଇ ତା' କାମ ଉଠାଇ ନେଲୁଁ ।" ବରଜୁ ଯଦୁକୁ ପୁଣି କୁଣ୍ଢାଇ ପକାଇଲା ।

× × × × ×

ତେବେଣି ପଦଆ ଡାକିଲା, "ହାଠ ଶୁଙ୍ଘିପିବ ପଣ । ଉତ୍ତୁର କାଲେ ଆଜ ଚାଲିବଟି ?" ସମସ୍ତଙ୍କୁ ଦେଖା କରି ବରଜୁ ପୁଣି ପଛରୁ ଡାକ କହିଲା, "ହଁ, ହଁ, ଗୋଟାଏ କଥା ତ ପାସୋରି ପକେଇଥିଲି । ଗୌରଙ୍କ ବାହାଘର ମାସ ସତର ଦିନ ତିଥି । ଏଇ ଶୁଣିବାର ତ, ନୁହଁକି ପଦଆ ମାମୁଁ ? ସେ ତ ଏକୁଟିଆ ମଣିଷ । ମୁଁ ଖାଲି ଯାହା ବାଆଙ୍କୁ ବଟା ଖୁଣ୍ଟାସୁଖା କରୁଛି । ଆଜ ଆମର ଏଇଠି ପଦଆ ମାମୁଁ । ଗୌରି ମନେ କେତେ ଆଗରୁ କହିଲଣି ଯେ, ମୁଁ ସିନା ବାହାକୁ ଦେଖିଲେ ତମକୁ ନାଚାନ ଦେବ । କିନ୍ତୁ ବିସ୍ତରିବ ନାହିଁ, ଭାଇ ! ଏ ତ ତମର କାମ । ମୁଁ ଯେମିତି କହୁଛି, ତମେମାନେ ବ ସବୁ କାମ ତୁଲେଇବ । ନଠ, ସଜାବ ଯାହାକୁ ପାରିବ ଖମାଇ ହୋଇ କହି ଦବ ।"

ଯଦୁ ଦଳେଇ କହିଲା, "ତମେ କହୁଛ, ବରଜୁଆ ଭାଇ ! ଦେଖିବନି, ଯେତେ କାମ ଥିଲେ ବି ଆସି ହାଜର ହବୁଁ ।" ପଦଆ ମାମୁଁ ଉଚ୍ଛନ୍ନ କଲା, "ଆଜ ସଉଦା କରିବା କଣ । ଯାହା ତମ ଘରଣୀ କହୁଥିଲା, ତମେ ତ ଖାଧା ଲୋକ, ପଧାନେ ।"

ଲୁଗାପଟା କଣିସାରି ପାନ ମସଲା ଦୋକାନକୁ ଦୁହେଁ ବାହାରିଛନ୍ତି, ବରଜୁ ଦେଖିଲା ମେଲଣ ପଡ଼ିଆରେ ବହୁତ ଲୋକ ଜୁଣ୍ଡ ହେଇ କଣ ଦେଖୁଛନ୍ତି । ସବୁରି ହାତରେ ସଉଦା । କିଏ ପାନ କଡ଼ାଏ ଧରିଛି, କିଏ ଗାମୁଛାରେ ଜାଉଁଳିକରି କାନ୍ଧରେ ଝୁଲେଇଛି । ଜାହା କାଖରେ ଛତା, କାହା ମୁଣ୍ଡରେ ଠେକା, କିଏ ଆଙ୍ଗୁଠି ଅଗରେ ଝୁଡ଼ା ହେଇ ବେକ ଲମ୍ବେଇ ଦେଖୁଛି । କିଏ ଗହଳି ଭିତରେ ଯାଇ ପଶୁଛି, ଆଉ କିଏ ବାହାରି ଆସୁଛି । ବରଜୁ କହିଲା, "କଣ ହଉଛି ଟିକିଏ ଦେଖିବାନି ?"—"ମୁଣ୍ଡ ପୋଡା

କେଳା ହେଉଥିବ ହେ"—କହି ପଦଆ ପାନ ମସଲା ଦୋକାନ ଆଡ଼କୁ ଚାଲିଲା । ବରଜୁ ସେହି ଗହଳ ଆଡ଼କୁ ଚାହିଁ ଚାହିଁ ପଦଆର ପିଛୁ ଧରିଥାଏ । ଗହଳ ଭିତରୁ ପାଟି ଆସି କାନ ଅତଡ଼ା ଫଟାଉଛି । ବରଜୁ କହିଲା, "ନାହିଁ, ମୁଣ୍ଡପୋଛା କେଳା ନୁହଁ । ତା ହେଲେ ଏତେ ପାଟି ଦୁଅଳ୍ୟା କାହିଁକି ?"

"ନଇଲେ ଷଣ୍ଢ ଲଢ଼େଇ କି ଆଉ କିଛି ତାମସା ଚାଲିଥିବ ।" ପଦଆ ସେ ଆଡ଼କୁ ଆଦୌ ନଜର ନ ଦେଇ ଦୋକାନ ଭିତରକୁ ମୁହାଁଇ ଥାଏ । ତିନି ଚାରି ଜଣ ଲୋକ କଥା ଭାଷା ହୋଇ ଚାଲିଥାନ୍ତି,—"ହଁ ସେଇ ଜଣକ ଯେ କଟକରୁ ଆସିଛନ୍ତି, ଭାରି ଭୁହାଳିଆ । ଉଃ କଥାରେ ତ ତାଙ୍କର ବାଟୁଳି ବାଜୁ ନାହିଁ । ଆମ ନାଥ ବାବୁ ଯେତେବେଳେ ତାଙ୍କ ଭଳି କହିବେ କୁଆଡୁ !" ଆଉ ଜଣେ ମୁହଁରୁ ବିଡ଼ି ଧୂଆଁ ବାହାର କରି କହୁଛି, "ସେଇ ନା ? ହଁ ତାଙ୍କ ପାଖେ ତ ନାଥ ବାବୁ ନାଉ ଧୁଆ ହେବେ ନାହିଁ । ଯେତେହେଲେ ପଛ ସହରିଆ ।" ଆଉ ଲୋକଟି ତାକୁ ଆକଟ କରି କହିଲା, "ଧେତ୍, ଲାଙ୍କର ବେଶି ପଢ଼ା ଅଛି ନା, ସହରିଆ କଣ ସମସ୍ତେ ଏମି[illegible]ବେ !"

ପଦଆ ଡାକିଲା, "ଦଅ, ଚାଲିକାଠା ମଡ଼ିବଟି । ଗୁଆ କେତେ—ସେତେ ନା ପାଞ୍ଚ ପା ? ଆଉ କଣ ? ଜବ ଧନିଆ କେତେ ? ଦେଖି ମହାଜନେ, ଭଲ ଜବ କାଢ଼ିବଟି ।"

ସେହି ଗହଳ ଭିତରୁ ସମୁଦ୍ର ଗର୍ଜନ ଭଳି ଆସିଲା "ଭାରତ ମାତା କି ଜେ ।"

ବରଜୁ ପଦଆ ମାମୁଁର କାନ୍ଧରେ ହାତ ରଖି ଡାକିଲା, "ଶୁଣି ପାରୁଚ ?" ଜବ ପଣ୍ଡାଏ ମକଚି ନାକ ପାଖକୁ ନେଇ ପଦଆ କହିଲା, "କଣ କି ?"

"ଏଣ୍ଡ ଯେ—ପାଟି ଶୁଣା ଯାଉ ନାହିଁ ?"

"କଣ ପାଟି ?"

"ଖବର ମାଡା ନା ଜେ ।"

"ହଁ ହେ, କହୁଚ ମାଡା ମୁଁ ଦେଖିଛୁ । ବାବାଜୀ ନୋଟିନେ ମାଡା ଗୋଟିଏ—ଆମର ସେଇଠୁ କଣ ହେଲା । ଦବଟି ମହାଜନ । ହଁ, ଜଗ ନେଜେଟେଜରୁ ଯିବ ?"

ନରଜ୍ ତାଲବା ପଡ଼ି କହ୍ନ ଦେଲା । ପୁଣି ସେଣ୍ଡ ଶବ୍ଦ ଆସି ଆସିଲା । ସଉଦା କଣୁ କଣୁ କଏ ଜଣେ କହିଲା, "ଅଃ ଏମିତ ପାଟି କଲ ବାନ ଅଡ଼ଡ଼ା ପକେଇଲେ ମଣିଷ କ ସଉଦା କରିବ ଭଲ ।"

ପଣ୍ଡଆର ସଉଦା କଣା ସରିଲା । ସବୁ ଜିନିଷ ବନ୍ଧାବନ୍ଧ କରି ଅଧେ ବରଜୁକୁ ଦେଇ ବାକୀ ଅଧକ ସେ ନିଜେ ଧରି ବାହାରିଲା । ସେତେବେଳକୁ ହାଟ ମଉଳିଲାଣି । ଦେଲଣ ପଣ୍ଡଆରେ ଯେତେ ଲୋକ ଜମା ହୋଇଥିଲେ ଆଜ ଏକଣି ନାହାନ୍ତି । ଦୋକାନୀମାନେ ଆଲୁଅ ଜାଳ ଦୋକାନ ବାନ୍ଧିଲେଣି । କାହା ପିଠିରେ ଗଣ୍ଠିଲି, କାହା ମୁଣ୍ଡରେ ବୋଝ, କଏ ହାତ ଧରାଧରି ହୋଇ ଏଣେତେଣେ ଚାଲିଛନ୍ତି ।

"କ ହେ ପଣ୍ଡଆ ମାମୁଁ, ଆଜ ତ କଣ ଶକତ ବୋଝ । ହାଟ ଗୋଟାକ ଟେକ ଆଣିଲ ପରି ଲାଗୁଛି ।" ପଛକୁ ବୁଲିପଡ଼ି ପଣ୍ଡଆ ପଚାରିଲା ।

"ନାଁଓ ବାବୁ କି ? ଓଳକ, ଓଳକ । ହଁ ବାବୁ, ଆମର ପର ବାହା ଘର, ସଉଦା କରି ଆସିଥିଲୁଁ ।"

ନାଥ ବାବୁଙ୍କ ସଙ୍ଗେ ଆଉ ଚାରି ପାଞ୍ଚ ଜଣ ଲୋକ ଚାଲିଥାନ୍ତି । ସେମାନଙ୍କୁ ଚାହିଁ ସେ କହିଲେ, "ଆମ ଗାଁରେ ଏ ହେଉଛନ୍ତି ସବୁଠି ପଢ଼ୁଆ ମାମୁଁ । ହଁ ହେ ପଢ଼ୁଆ ମାମୁଁ, ତମର କଏ ପୁଣି ବାଧା ଦେଉଛୁ ?"

ପଢ଼ୁଆ ଉତ୍ତର କଲା, "ନାହିଁ ଆଜ୍ଞା, ମୋର ଆଉ ବାଧା ହବ କଏ ? ଆମ ସାହିର ଗୌରାଙ୍ଗ ଶେଣ୍ଠ ବାଧା ଦେବେ । ଆଜି ତ କଣ ଆପଣଙ୍କ ସାଥିରେ ଆଉ ସବୁ କଏ ନୂଆ ବାବୁମାନେ ଆଇଚନ୍ତି ।"

"ସେମାନେ କଟକରୁ ଆସିଛନ୍ତି । ତମେ କଣ ଆଜି ସଭା ଠେଇଁକି ଯାଇ ନ ଥିଲ କି ?"

"କି ସଭା ଆଜ୍ଞା, ଆମେ ତ ସଭା ବୋଇଲେ ସଙ୍ଗୁଡ଼ି ସଭା, ନଇଲେ ଆଳପଣା ସଭା ବୁଝୁଁ ।"

ସମସ୍ତେ ଖେଁ ଖେଁ ହସି ଉଠିଲେ । ନାଥ ବାବୁ କହିଲେ, "ନାହିଁ ମ, ସେ ସଭା ନୁହେ ଯେ, କଂଗ୍ରେସ ସଭା ମେଲଣ ପଡ଼ିଆରେ ଆଜି ଯବ ହେଉଥିଲା । ଏଇ ବାବୁମାନେ କଟକରୁ ଆସି ସେଇଠି ବକ୍ତୃତା ଦେଉଥିଲେ । ଯାଇଥିଲେ କେତେ କଥା ଶୁଣିଥାନ୍ତ, ବୁଝିଥାନ୍ତ ।"

"ହଁ ହଁ, ହେଉଥିବ, ହେଉଥିବ । ପଧାନେ ମତେ ସେଇ ସଭା କଥା ପଚାରୁଥିଲେ ଯବ । "ନାହିଁ କି ହେ ପଧାନେ ?" ମୁଁ କହିଲି ପିଲା ମୁଣ୍ଡଫୋଡ଼ା କେଳା ଭେଇଁଥିବେ କି ଷଣ୍ଢ ଲଢ଼େଇ ଲାଗିଥିବ ।"

ନାଥବାବୁ ବଉଜୁକୁ ପୁଣି କହିଲେ, "ପଧାନେ କେଉଁ ଗାଁର କି ? ତାଙ୍କୁ ତ କାହିଁ ଆଗରୁ ଦେଖିଲା ପରି ମୋତେ ମନେ ନାହିଁ" ।

ବଉଜୁ କହିଲା, "ମୋ ଘର ପଧାନପଡ଼ାରେ, ବାବୁ । ଗୌରାଙ୍ଗ ମୋର ପ୍ରୀତି ବନ୍ଧୁ । ମାସ ଦୁଇ ତିନ ହେଲା ତାଙ୍କ ଘରକୁ ମୁଁ ଆସିଚି ।"

"ହେଲା ତେବେ ଏଥର । ମୁଁ ସବୁ ଶୁଣିଚି, ପଧାନେ । ତମେ ଆମର ଗାଁରେ ତିନମାସ ହେଲା ଆସି ରହିଲଣି । ଦୁଃଖର କଥା, ଆଜଯାକେ ତମ ସାଙ୍ଗେ ଚିହ୍ନା ପରିଚୟ ହୋଇନାହିଁ ।" — ନାଥବାବୁ କହିଲେ ।

ବଉଜୁ ନ କହୁଁ ପଧଆ ଉତ୍ତର କଲା, "ତାଙ୍କୁ କଣ କେତେ-ବେଳେ ଘର ଅଛି କି, ବାବୁ । ସବୁବେଳେ ତ ଏପଟ ସେପଟ ଝଲବାର ଦଉଁ ଦଉଁ ତାଙ୍କୁ ଦିନ ଅଣ୍ଟୁ ନାହିଁ । ଯାହାହଉ, ଗଜସ୍କୁ ଗୋଟିଏ ଖାସା ଲୁଣୁଆ ମିଳିଗଲା ।"

ବଉଜୁ ଟିକିଏ ଚିଡ଼ିଲା ହୋଇ କହିଲା, "ଯାଃ, ସବୁ କଥାରେ ତମର ଖାଲି ଠାପର ।"

"ଆଚ୍ଛା ହଉ, ହଉ, ଏଥର ଦେଖା ହେବ ଯେ"—ନାଥବାବୁ କହିଲେ । ପଧଆ ପୁଣି ଉତ୍ତର କଲା, "ସେ ମଧ୍ୟ ଅପଣାଙ୍କ ଭଳି ସ୍ୱାଧ ଦେଶଭକ୍ତୁଆ ମଣିଷ । ସମ୍ପତ୍ତି ବାଡ଼ି ସବୁ ଦାନ ଖଇରାତ ଦେଇ ଫକୀର ଏଠିକୁ ପିଲା ମାଇପ ଧରି ପଳେଇ ଆଇଚନ୍ତି ।"

ବଉଜୁ ପଧଆଙ୍କୁ ଇଟମଟ କରି ଚାହିଁ ନାଥବାବୁଙ୍କୁ ଦଣ୍ଡବତ ହେଲା । "ଆସନ୍ତୁ ଆଜ୍ଞା ! ମୁଁ ଯାଇ ଏଥର ନିଶ୍ଚେ ଦେଖା କରିବ ।"

ଯେଉଁ ସମୟରେ ବରଜୁ ସବୁ ସମ୍ପତ୍ତି ସାନ ଭାଇ ଜିମା କରି-ଦେଇ ନିଜ ଗାଁ ଛାଡ଼ି ହରିପୁରରେ ଆସି ରହିଲା, ସେତେବେଳେ କଣ ଗୋଟାଏ ଭାରି ଚହଳ ପଡ଼ିଯାଇଥାଏ । ସେତିକିବେଳେ ଇସ୍କୁଲ କଲେଜ ଛାଡ଼ି କେତେ ପାଠ ପଢ଼ୁଆ ଲୋକ ବାହାରି ଆସିଲେ । ସେଠୁଁ ଘରେ ଗୃହସ୍ଥ ପୁଣି ଘର ଛାଡ଼ି ପଶିଲେ ଜେଲ ଭିତରେ । ଶୁଣା ଯାଉଥାଏ ଇଂରେଜ ପାଠ ରହିବ ନାହିଁ, କଚେରି ଥାଣା ଭାଙ୍ଗି ଯିବ । ସବୁ କାମ ଦେଶୀ ଲୋକେ କରିବେ । ହରିପୁର ଶ୍ରୀନାଥ ବାବୁ ସେତିକିବେଳେ ପଢ଼ା ଛାଡ଼ି ଗାଁକୁ ଆସିଥାନ୍ତି । ସବୁରି ଆଗେ କହି ବୁଲୁଥାନ୍ତି, ଆଉ ଏ ପାଠ ପଢ଼ାର କିଛି ମୂଲ୍ୟ ନାହିଁ । ଏସବୁ ବିଦେଶୀ ପାଠକୁ ଯୋଗାଡ଼ ଦେଇ ଆମର ଦେଶୀ ପାଠ ପଢ଼ା ହେବ । ଯେଉଁ ଆଡ଼କୁ ଗଲ, ଖାଲି ଏଇ କଥା । ଯେଉଁଠି ପାଠ ପଢ଼ୁଆ ଲୋକ ଅଛନ୍ତି, ତାଙ୍କ ପାଖକୁ କେତେ ଲୋକ ଧାଇଁଲେ ଖବର କଣ ଶୁଣିବା ପାଇଁ । ମକଦ୍ଦମା ତାରିଖକୁ ଯେ କଚେରି ଯାଇ ଫେରିଲା, ତାହା ମୁହଁରେ ବି ଏଇ କଥା । ପୁରୀ, କଟକ, ବାଲେଶ୍ୱର ସବୁଆଡ଼େ ଏହି ଚହଳ । ଆହୁରି ବଡ଼ ସହର, ବମ୍ବେ, କଲିକତା, ଦିଲ୍ଲୀ— ସେଠିକାର କେତେ ବଡ଼ ବଡ଼ ଉକିଲ, ବାରିଷ୍ଟର, କେତେ କୋଟି-ପତି, ଶେଠ, ମହାଜନ, ନିଜ ପିଲା ଛୁଆ କୋଠା ବାଡ଼ି ରୋଜଗାର ବାଟର ଛାଡ଼ି ପୁଣି କୁଆଡ଼େ ହାତକଡ଼ି ପିନ୍ଧିଲେ । ଚାରିଆଡ଼େ ହୁଲୁକି ଉଠୁଥାଏ ।

ପଢ଼ୁଆ ନାଥ ବାବୁଙ୍କୁ କହିଲା, ବରଜୁ କୁଆଡ଼େ ତାଙ୍କର ଭଲ ବେପରୁଆ ମଣିଷ । ତାହା ସାଥିରେ ବାହା କଥା ! ନାଥ ବାବୁ ଭଲା କଣ ବୁଝିବେ ! କେତେ ପାଠ ଶାଠ ସେ ପଢ଼ି ନାହାନ୍ତି ! କେତେ କଥା ଜାଣି ନାହାନ୍ତି ! ତାଙ୍କ ସାଥିରେ ବରଜୁ କେଉଁ ଗୁଣରେ

ସବସା ! ଘଢଆ ମାମୁଁ ଠାକୁ କଥା କହୁ ଆସେ ନାହିଁ । ତାହାକୁ ନେଇ କେଉଁଠି ଖୋଜୁଛ ।

ଘଢଆଙ୍କୁ ସେ ଆକଟ କଲ, "ତମେ ବଡ଼ ନାଜର କଥାଟା କହୁଲ ! ତାଙ୍କ ସାଙ୍ଗରେ ମତେ ନେଇ ସବସା କରୁଛ ? ଏମିତ କଥା କହନ୍ତ ?"

"କାହିଁକ କହନ୍ତ ନ ? ସେ ପାଉ ପାଉ ବସୁଥିବେ ଆମେ ଚଷା ଭୂଷା ମଣିଷ । ଆମକୁ ଅବା କଥା କହୁ ଆସେ ନାହିଁ । କାହିଁକ, ସେ କଥା କଣ ସତ ନୁହ କ ?"

ନାଥ ବାବୁଙ୍କ ସାଥିରେ କଟକରୁ ଆସିଥିବା ଆଉ ବାବୁ-ମାନେ ହଶପୁର୍ ହାଟରେ ସେ ଦିନ ଯେଉଁ ସଭା କଲେ, ସେ ଖବର ବିଜୁଳି ପରି ଆଖପାଖ ଗାଁ ଗୁଡ଼ିକରେ ଚମକପଗଲ । ଜାଣିବା ଶୁଣିବା ଲୋକେ ନାଥ ବାବୁଙ୍କୁ ହସରେ ଉଡ଼େଇଲେ । ହଃ ସ୍ୱାଙ୍କର କଥାରେ ଇଂରଜ ସରକାର ବାହାରିଯିବ !

ଇସ୍କୁଲ ମାଷ୍ଟର ଖଣ୍ଡେ ଗଣ୍ଡିଆ ବାଉଁଶକୁ ସ୍ୱଛ ବାଠୁଳ ଖଡ଼ା ତିଆରି କରୁଥାନ୍ତି । ମାକଡ଼ବୁଢ଼ା ଏବେ ଘର ଉତ୍ପାତ କରୁଛନ୍ତି, ପିଢ଼ା ଉପରେ କଖାରୁ, ଶିମ୍ବ କଟୁ ତ ରଖି ଦେଲେ ନାହିଁ । ପୁଣି ପିଢ଼ାଠାକୁ ଅଧା ଓଲାଣ ପାରଲେଣି । ବାଠୁଳ ଖଡ଼ାର ଗଣ୍ଡି ଗୁଡ଼ିକ ସ୍ୱଳୁରେ ଖୁବ୍ ଯତ୍ନରେ ତୁଳା ଯାଇଛୁ । ଖଡ଼ା ଖଣ୍ଡିକ ଧରି ନଜର-ନଳୀରେ ସ୍ୱଚ୍ଛିଲ ଭଳି ଏ ମୁଣ୍ଡରୁ ସେ ମୁଣ୍ଡକୁ ଦେଖି ମାଷ୍ଟ୍ରେ କହନ୍ତ, "ଆହେ, ସେ କଥାକୁ ଆଉ ଉପହାସ୍ୟ କଲେ ଚଳବ ନାହିଁ । ଆମ ଲୋକ-ବୋର୍ଡ଼କୁ ଏବେ ଯେ ନୂଆ ଚଇମେନ୍ ଆସିଛନ୍ତି, ତାଙ୍କର ଚ

ବରାଦ ହେଲାଣି, କି ପିଲା, କି ମାଷ୍ଟର ସମସ୍ତେ ଏଣିକି ସୂତା କାଟି ଶିଖିବେ । ଏବକୁ ତ ସବୁ ନୂଆ ଭିଆଣ ହେଉଛି ।"

ପଢ଼ୁଆ କହେ, "ତମେ କାହିଁକି ଆଉ ପାଠ ପଢ଼େଇବ କି ମାଷ୍ଟ୍ରେ, ଆମ କେଲାମା ଗଉଡୁଣୀ ତ ଇସ୍କୁଲ ମାଷ୍ଟ୍ରେ ହେଲେ ଭଲ ହୁଅନ୍ତା । ତା ପାଟେଙ୍କ ତେମେ କଣ ସୂତା କାଟି ପାରିବ ?"

ନାଥ ବାବୁଙ୍କ ଘରକୁ ଆଜି ଯେ ବାବୁମାନେ ଆସିଥାନ୍ତି, ତାଙ୍କ ଭିତରେ ଜଣେ ଖଦି ବୁହାଳିଆ ଜୟକୃଷ୍ଣ ବାବୁ । ସେ କହନ୍ତି, "ତୁମ ମନରେ ସବୁ ଯେ କେମିତି ବିଶ୍ୱାସ ହେବ, ବୁଝି ହେଉ ନାହିଁ । ଯେଉଁ ଉତ୍କଳ ବାରିଷ୍ଟରମାନେ କଚେରି କାମ ଛାଡ଼ି ଏ କାମରେ ମାତିଛନ୍ତି, ତାଙ୍କ ରୋଜଗାର କଣ ଜାଣ ? କାହାର ତିରିଶ ହଜାର ତ ଆଉ କାହାର ପଚିଶ ହଜାର ।" ମାସକୁ ଟଙ୍କା ଆଠଟା ରୋଜଗାର କରୁଥିବା ଇସ୍କୁଲ ମାଷ୍ଟରଙ୍କ ମୁଠାଟା ତେଲ ମାଲିସ କରୁଁ କରୁଁ ବାଡ଼ ମଝିରେ ଅଟକିଯାଏ । ପଚାରନ୍ତି, କଣ ବାବୁ, ବର୍ଷକୁ ଏତେ ରୋଜଗାର ?"

"ନାହିଁ ହେ ଆପଣେ, ମାସକୁ, ବୁଝିଲ ? ହିଁ, ଆଉ ଯେ ଶେଠମାନେ ମାତିଛନ୍ତି ତାଙ୍କର ତ ଏହା ଦିନକର ରୋଜଗାର ।"

ଆଚ୍ଛା ବାବୁ, "ଆମ ମଧୁ ବାରିଷ୍ଟର ଲକ୍ଷ ସ୍ୱା' ଭିତରେ ଅଛନ୍ତି ?"

ମାଷ୍ଟରଙ୍କ ଚାଳ ଉପରେ ମାଙ୍କଡ଼ ଚଢ଼ି କଖାରୁ ଛିଣ୍ଡାଏ । ତାଙ୍କ ପୁଅ ସମନ ଫାଟିକରେ । ମାଷ୍ଟର ମଧ୍ୟ ଜୟକୃଷ୍ଣ ବାବୁଙ୍କ ଉତ୍ତରକୁ

ଆଉ ଚକେଇ ନ ପାଇ 'ଧୂଅ ଧୂଅ' ଗର୍ଜନ କରି ମାଙ୍କଡ଼ ମାରିବାକୁ ଦୌଡ଼ନ୍ତି ।

× × × ×

ଜୟକୃଷ୍ଣ ବାବୁଙ୍କ ଘର କୁଆଡ଼େ ବାଲେଶ୍ୱର । ଧନୀ ଘରର ପିଲା । ବାପା ତାଙ୍କର କାନ୍ଟ୍ରାକ୍ଟି କାମରେ ବହୁତ ପଇସା ରୋଜଗାର କରିଥିଲେ । ଏବେ ବାପା ନାହାନ୍ତି, ଅଚଳାଚଳ ସମ୍ପତ୍ତିର ମାଲିକ ସେ । ହେଲେ ଆଉ ସମ୍ପତ୍ତିବାଢ଼ିବା ତାଙ୍କର ମୋଟେ ସେତେ ନିଘା ନାହିଁ । ବୟସ କିଛି ବେଶି ନୁହେଁ । ଜମାରୁ କୋଡ଼ିଏ କି ବାଇଶି ହେବ । ଗୋରା ତକ ତକ ଚେହେରା । ପାନ ଖାଇଲା ସଞ୍ଚ ଓଠ ଯୋଡ଼ିକ ସବୁବେଳେ ଲାଲ । ଟିକିଏ ଚଲା ଆଖିଆ, ଚସମା ଘେନ-ଥିବାରୁ ବାରି ହୁଏ ନାହିଁ । ବଦନରେ ତ ଦାଢ଼ି ସ୍ୱର ଫଳ ହେବ କି ନାହିଁ, ତେବେ ତେଜ ଦେଖିବ କିଏ ? ସଜ୍ଜ ମଟିରେ ଠିଆ ହେଲା ବେଳେ ହଜାର ଲୋକଙ୍କୁ ଭୁମା କରି ଭେଟେ ଉଲୁଖା ଦେଇ କହୁ ଶୁଣିଥିବେ ଯେ, ପାର୍ଟିରେ ବାଠୁଲି ବାଜିବ ନାହିଁ । ପୁଣି ସେଠୁ ବାହାରି ଆସିଲେ ଯେମିତି ଗୋଟାଏ ମାଇଲି ମୂଷା । ବାଇରି ଜଣ୍ଡସ ଯେ ହେଲା, ବାହାରିକି ଆପଣ ଛଡ଼ା ଭୂମେ ନାହିଁ । ନାଥବାବୁ ହେଉଛି ତାଙ୍କୁ ଜୟ ଜୟ ବୋଲି ଡାକନ୍ତି । ଘରେ ଖାଲି ବୁଢ଼ୀମା ଛଡ଼ା ଜୟକୃଷ୍ଣ ବାବୁଙ୍କର ନିଜର ବୋଲି କେହି ନାହିଁ । ବୁଢ଼ୀ ତେଣେ କାଢ଼ ବୋଟେଇ ପଡ଼ୁଛି । କଲେଜରେ ପଢ଼ିଲାବେଳର ବାକ୍‌ସରେ ଟକ୍ ଟକ୍ ଯୋଟା, ସୁନା ଘଡ଼ି, ପାଟଅଙ୍ଗା, ଫରସୀରଙ୍ଗାର ସବୁ ସୂକ୍ଷ୍ମ ଲୁଗାକୁ ବ୍ୟାହ୍ମି ବୁଢ଼ୀ ଆଖିରେ ଲୁହ ସମ୍ଭାଳି ପାରୁ ନାହିଁ । କଲେଜରେ ଯେମନ୍ତ ବେଶ ହୋଇ ବାହାରୁଥିଲେ ସବୁ ତ କ ପାଣିକିନ୍ତୁ ଓହ୍ଲାଇ ବେଦୀ ଉପରକୁ ଯାଉଛନ୍ତି । ପୁଣି କୁଆଡ଼େ ଗଲା

ସେ ଫୁଲିସ୍ ତେଲ ସାବୁନ ! ଏବେ ଖାଲି ଅଣ୍ଟାରେ ଖଣ୍ଡେ ପାଞ୍ଚ ହାତି ମୋଟା ଖଦଡ଼, ଦେହରେ ଖଣ୍ଡେ ଖଦଡ଼ ଫତେଇ । ମୁଣ୍ଡରେ ତ କେଉଁ ଦିନୁ କେଜାଣି ତେଲ ବାଜି ନ ଥିବ । ନେତ୍ରରେ ପୁଣି ମଝିରେ ମଝିରେ ଖିଅର ହୋଇ ଏଭଳିବେଳେ ଟାଙ୍ଗର ଦିଶନ୍ତି ।

ଖାଇବା ପିଇବାରେ ମୋଟା ସୋଟା ଭରି ଯାହା ଗଣ୍ଡେ ହେଲ ଖୁସି । ନାଥବାବୁ କହନ୍ତି, କଲେଜରେ ପଢ଼ିଲାବେଳେ ମେସ୍ ସୁପ୍ରିଣ୍ଟେଣ୍ଡେଣ୍ଟ ବସ୍ତ ଥିଭ, ଠାଏ ଦ'ଠା ତାଙ୍କପାଇଁ ଅଧିକା କରାଯାଉ । ରସଗୋଲା, ସନ୍ଦେଶ ନ ହେଲେ ବାବୁଙ୍କର ଜଳଖିଆ ହୁଏ ନାହିଁ । ଏବେ ଚୂଡ଼ା ମୁଢ଼ି ଯାହା ହେଲ ଖୁସି । ତେବେ ଅର୍ଜ୍ଜୁନ ବାବୁଙ୍କୁ ଚୂଡ଼ା ମୁଢ଼ି ଭଲ ଲାଗେ ନାହିଁ ।

ଅର୍ଜ୍ଜୁନ ବାବୁଙ୍କ ଘର ଯାଜପୁର । ବାପା ତାଙ୍କର କଟକରେ ଓକିଲାତି କରି ବେଶ୍ କୋଠାବାଡ଼ି କରିନେଇଛନ୍ତି । ଏବେ ସମସ୍ତେ କଟକରେ ରହିଲେଣି । ଯେତେହେଲେ କଟକୀ ବାବୁ, ପୁଣି ଓକିଲ ପୁଅ । ସେ କଣ ସିଂପଲ ବାବେସାଙ୍କୁ ଖାତିର କଲେ ଆଣୁଛନ୍ତି ? ସହରରେ ଠିଆ ହୋଇ ସେ ସିପେଇ, ଦାରୁଗା, ଅମଲା ହାକିମଙ୍କୁ ଯେମିତି ଶୋଧା ଶୋଧିଲେ ତାହା ତ ସ୍ୱେର ଚଣ୍ଡାଳଙ୍କୁ କେହି ଭଲ୍ହେ ନାହିଁ । ଏଡ଼କ ନିର୍ଭୟ ! ଯାଜପୁରରେ ଜୁଆଡ଼େ ଗୋଟାଏ ସଭାରେ ବକ୍ତୃତା ଦେଇ ସାରି ଆସିଲାବେଳେ ଜଣେ ସିପେଇସାଥିରେ ତାଙ୍କର କଣ କଚସା ହେଲା । ସିପେଇ ତ ଯେତେହେଲେ ମୂର୍ଖ ଲୋକ । ସେ କଣ ପାଠ ବୁଝିବ ? ତାଙ୍କୁ ଗୋଟାଏ ଘୁସି କଷି ଦେଲା ଯେ, ଗାଲଟା ଭେଣ୍ଡିଫୁଲ ପରି ଦିଶିଲା । ଅର୍ଜ୍ଜୁନ ବାବୁ ଗାଲ ଆଉଁସି ଜୁଆଡ଼େ ଆଉ ଗାଲଟି ଦେଖାଇଦେଇ କହିଲେ, "ଏ ଗାଲରେ ତେବେ ଆଉ ଗୋଟିଏ ମାର ।" ଯେତେ ଲୋକ ଜମା

ହୋଇଥିଲେ ସମସ୍ତେ ସେ ମିଟିଂରେ ହିଁ ସ୍ଥିର କଲେ ଯେ, ସେଥିରୁ ବାହାରି ଯିବାକୁ ତାକୁ ବାଟ ଦିଶିଲା ନାହିଁ । ଏବେ ସେ ମିଟିଂର ଜଣକ ହେଡ୍ କନେଷ୍ଟବଲ ହୋଇ ବେଶି ଦରମା ପାଇଲାଣି । ଅର୍ଜୁନ ବାବୁଙ୍କ ନାଁ ଖବରକାଗଜରେ ବାହାରିଗଲା । ଯେ ଶୁଣିଲା ସେ ଧନ୍ୟ ଧନ୍ୟ କଲା । ଯୁଆ ନାଁ ଯେ ପୁଅପଣିଆ !

ବାଙ୍ଗର ହୋଇ ମଣିଷ ଖଣ୍ଡେ । ରଙ୍ଗ ଟିକିଏ ସାବନା । ନାକଟି ସାନ ହେଲେ ବି ସଳଖ । ଅଳପକେ ନାକ ତଳକୁ ନିଶକୁ ଅନସା କଟେଇ, ସତେ କି କଳା ପ୍ରଜାପତିଟିଏ ଡେଣା ମେଲି ବସିଚି । ଓଠ ଦିଓଟି ସରୁ । ହସିଲେ ଦ'ଧାଡ଼ି ଧଳା ଦାନ୍ତ ବାହାରି ଆସେ । ମୁଣ୍ଡ ଅନ୍ଦାଜରେ କାନ ଟିକିଏ ବଡ଼ ବଡ଼ । ମୁହଁ ହଲାଇ କଥା କହିଲେ ଯେମିତି ଅବା କାନଯୋଡ଼ାକ ଦୋହଲିଯିବ । ସେ ପଢ଼ା ଛାଡ଼ି ବାହାରେ ବୁଲିବାକୁ ବାପାଙ୍କର ଜମାରୁ ଇଚ୍ଛା ନ ଥିଲା । ତେବେ ଦୟାନିଧି ବାବୁ ଓକିଲ ବଡ଼ ଖାଣ୍ଟି ଲୋକ । ଆପଣା ଫିସ୍‌ଟିକୁ ଛାଡ଼ି ଆଉ କେଉଁବାଟେ ହେଲେ ମକ୍କେଲଠାରୁ ପଇସା ଖାଇବେ ନାହିଁ । ନିଜେ ପୁଣି ତ ସେ ଆମରି ଦେଶର ଲୋକ । ଦେଶ ପାଇଁ ସେ ନିଜେ ଗୀତ ବାନ୍ଧି ଦ'ପଇସିଆ, ଚାରିପଇସିଆ ବହି ଛପାଇ ବାଣ୍ଟିଛନ୍ତି । ଆହୁରି କୁଆଡ଼େ ଦୁଇଦିନ କାଳ ସେ କଚେରି ନ ଯାଇ ଘରେ ବସି ଅରଟରେ ସୂତା କାଟିଥିଲେ । ସରକାର ତାଙ୍କ ଓକିଲାତି ଲାଇସେନ୍ସ କାଟିଦେବ ବୋଲି ଧମକେଇଲାରୁ ସିନା କଚେରି ଗଲେ । ହେଲେ ଅର୍ଜୁନ ବାବୁଙ୍କ ମା ଭଉଣୀ ସମସ୍ତେ ଚରଖାରେ ସୂତା କାଟନ୍ତି । ତାଙ୍କ ଘରକୁ ଯେତେ ମାମଲାବାଜ ଲୋକ ମସୁଧା କରିବାକୁ ଆସନ୍ତି, ସବୁରିଙ୍କୁ ଦୟାନିଧି ବାବୁ କହି ଲାଗିଲେ, "ଅରଟରେ ସୂତା କାଟ । ବର୍ଷକ ଭିତରେ ସ୍ୱରାଜ ମିଳିଯିବ ।"

ନିଜେ ଆଗ କାମରେ ସବୁ ଦେଖାଇଲେ ସିନା ଲୋକେ ତାଙ୍କ କଥା ଶୁଣିବେ । ଦୟାନିଧି ବାବୁ ସେଥିପାଇଁ ରୋଜ କଚେରୀରୁ ଫେରି ଗୋଟିଏ ଘଣ୍ଟା ସୂତା କାଟନ୍ତି । କେହି କେହି କହନ୍ତି, ଦେଶପାଇଁ ଯେବେ ଏଡ଼େ ଲୋଭ, ଆଉ ତେବେ ସରକାରୀ କଚେରୀକୁ ଯିବେ କାହିଁକି ? କି ରେ ବାବୁ, ମଣିଷର ତ ପୁଣି ପେଟ ପାଟଣା ଅଛି ।

ସେ ତ ନିଜେ ଓକିଲ । ତାଙ୍କ କେଉଁ କଥା ଅଛପା ରହିଛି ଭଲା ! ବର୍ଷକ ଭିତରେ ସ୍ୱରାଜ ହୋଇଗଲେ ଦୟାନିଧି ବାବୁଙ୍କୁ ବଳେ ଗୋଟାଏ କିଛି ବଡ଼ପାହିଆ କାମ ମିଳିଯିବ ନାହିଁକି । ନଇଲେ କି ସେ ପୋଲିସ କି ସରକାରଙ୍କୁ ଖାତିର ନ କରି ସବୁରି ଆଗରେ ଖଦଡ଼ଲୁଗା ପିନ୍ଧି ବସୁଛନ୍ତି । ତେବେ ଅର୍ଜୁନ ବାବୁ ଯେଉଁ ଦିନ କଲେଜ ଛାଡ଼ି ବାହାରି ଆସିଲେ ତାଙ୍କ ବାପାଙ୍କ ମନକୁ ସେ କଥାଟା ପାଇଲା ନାହିଁ । ହେଲା ଏବେ, ଆମେ ତ ସବୁ ଦେଶ ପାଇଁ ଯାହା କରିବାର କରୁଚୁଁ । ତୁ ଭଲ ପରୀକ୍ଷାଟା ନ ଦେଇ ଘରକୁ ପଳେଇ ଆସିଲୁ କାହିଁକି ? ଫିସ୍ ଦାଖଲ ହେଲା, ଏତେ ପରିଶ୍ରମ କରି ପଢ଼ିଲୁ, ଶେଷ ମୁଣ୍ଡରେ ଛାଡ଼ି ଚାଲି ଆସିବା ଠିକ୍ ହେଲା କି ? ପରୀକ୍ଷାଟା ଦେଇ ପକେଇଥିଲେ କଣ ଅବା ଅପରାଧ ହୁଅନ୍ତା ! ଖାଲି ପରୀକ୍ଷା ଯୋଗୁଁ କଣ ସ୍ୱରାଜ ଅଟକି ଯାଉଚି !

ତେବେ ପୁଅକୁ ଯେତେ ସେ ଆକଟ କରିଛନ୍ତି, ସବୁ ଘର ଭିତରେ । ପଦାରେ କରିବେ କମିତି ? ଅର୍ଜୁନ ବାବୁ ତ କିଛି ଏକା ନୁହନ୍ତି । ଆହୁରି କେତେ ଜଣ ପିଲା ବି ପରୀକ୍ଷା ନ ଦେଇ ବାହାରି ଆସିଥାନ୍ତି । ନିଜେ ଆଗୁଆ ହୋଇ ବାହାରିଛନ୍ତି, ପୁଅକୁ ମନା କରିବେ କେଉଁ ମୁହଁରେ ? ସେଥିପାଇଁ ରାତିରେ କେହି ବାହାର ଲୋକ ନଥିଲା ବେଳେ ଟୁପୁଟୁପୁ କରି ପୁଅକୁ କେତେ କଥା

ବୁଝାଇଲେ । ଅକାରଣରେ ତାଙ୍କ ପଢ଼ାପିଛୁ ପଇସା ଗୁଡ଼ାଏ ଖର୍ଚ୍ଚ ହେଲା ବୋଲି ବ୍ୟସ୍ତ ହେଲେ । ସ୍ତ୍ରୀଙ୍କୁ ମଧ୍ୟ ସାକ୍ଷୀ କଲେ । ଶେଷକୁ କାହିଁରେ କଣ୍ଟ ନ ହେଲାରୁ ଆଉ ଦିନ ଓକିଲାତଖାନାରେ ପୁଅଙ୍କ ପଢ଼ାପିଛୁ ଯାହା ଖର୍ଚ୍ଚ କରିଥିଲେ, ତାହାର ଗୋଟିଏ ଲମ୍ବା ଫର୍ଦ୍ଦ ହିସାବ ଦେଇ ଏବେ ବଂଶଯାକ ଦେଶ କାମରେ ବାହାରିଲେ ବୋଲି ଶୁଣାଇଦେଲେ ।

ଦୟାନିଧି ବାବୁ ଯେମିତି ମନେ ମନେ ପୁଅକୁ ନିହାତି ବୋକା ବୋଲି ଭାବୁଥାନ୍ତି, ଅର୍ଜ୍ଜୁନ ସେମିତି ବାପାଙ୍କ କଥା ପଡ଼ିଲେ ନାକ ଟେକି ଦିଅନ୍ତି । ବାପାଙ୍କ ଇଚ୍ଛା ଦୁଇ ନାଆରେ ଗୋଡ଼ ଦେଇ ଚାଲିବା ପାଇଁ । ଏଣେ ଓକିଲାତି, ତେଣେ ଦେଶକାମ— ଦୁଇଟାଯାକ ଏକା ସାଙ୍ଗରେ ଚାଲିଥିବ । କରିବ ଯେବେ ଗୋଟାଏ କାମ ଭଲ ଭାବରେ ହେଲେ କର । ପୁଅ ମୁଣ୍ଡକୁ ଆଶା, ତେଲ ଘଡ଼ିକ ଆଶା । ବାପ ପୁଅଙ୍କର ବେଶି ଭେଟ ହୁଏ ନାହିଁ । ଖାଲି ଲୋକେ ଜାଣିବାକୁ ଦୁଇଜଣଯାକ ଦେଶ ପାଇଁ ବାହାରିଛନ୍ତି ।

ଜସ୍ମୀବାବୁ, ଅର୍ଜ୍ଜୁନ ବାବୁଙ୍କ ସାଥିରେ ନଶାମଣି ବାବୁ ବୋଲି ଆଜ ଯେଉଁ ଜଣଙ୍କ ଆସିଥାନ୍ତି ତାଙ୍କ ଘରେ କେଉଁ ବୋଲି କେହି ନାହିଁ । ସେ ଭାରି ଗରିବ । ମଗା ପଇସା କରି ପଢ଼ୁଥିଲେ । ତେଣିକି ଆଉ ପାରିଲେ ନାହିଁ । ପୁରୀ ଜିଲା ସାକ୍ଷୀଗୋପାଳ ଥାନାରେ ଘର । ମଣିଷଟି ଦେଖିବାକୁ ଚିକ୍କଣ କଳା । ନାକପୁଡ଼ା ଯୋଡ଼ିକ ମୋଟା, ଡାହାଣ ପୁଡ଼ାତଳେ ଗୋଟିଏ କଳା ଜାଇ । ଦେହ କଳା ଥିବାରୁ ନଜରେଖି ନ ଚାହିଁଲେ ବାରି ହୁଏ ନାହିଁ । ଠକା ମୁହଁଟି ସବୁବେଳେ ଶୁଖିଲା ଦିଶେ । କଥା କହୁଁ କହୁଁ କାନ୍ଦି ପକାନ୍ତି । ବେଶି ମେଳାପୀ ନୁହନ୍ତି ।

ତେବେ ନିଶାମଣି ବାଉ ନିଷ୍ଠାପର ମଣିଷ । ପାହାନ୍ତାରୁ କେହି ନ ଉଠିବା ଆଗରୁ ଗାଧୁଆ ପାଧୁଆ ସାରି ଅଧ୍ୟାୟେ ଗୀତା ପାଠ କରିବେ । ତା' ସାଙ୍ଗକୁ ପୁଣି କଣ ଯୋଗ ସାଧନା କରନ୍ତି । ଥରେ ବାଁ ନାକ ପୁଡ଼ାରେ, ଆଉଥରେ ଡାହାଣ ପୁଡ଼ାରେ ନିଃଶ୍ୱାସ ନେଲା-ବେଳେ ଡମ୍‌ଫାଟ ଗର୍ଜନ ଭଳି ସୁ ସୁ ଶୁଣାଯାଏ । ଯେଉଁ ଗୁରୁ ତାଙ୍କୁ ଏ ବିଦ୍ୟା ଶିଖାଇଥିଲେ ସେ କୁଆଡ଼େ ସାଧନା କଲାବେଳେ ମାଟିରୁ ଦୁଖଣ୍ଡେ ଉପରକୁ ଉଠିଯାନ୍ତି । ଆଉ ତାଙ୍କ ଗୁରୁଙ୍କ ଗୁରୁ କୁଆଡ଼େ ଆକାଶରେ ଯା'ଆସ କରନ୍ତି । ଦିନେ ତ ବରଜୁ ନିଜେ ଭୋରରୁ ଯାଇ ଦେଖିଲା ବେଳକୁ ନିଶାମଣି ମୁଣ୍ଡ ତଳକୁ କରି ଗୋଡ଼ ଯୋଡ଼ିକ ସିଧା ଉପରକୁ ଟେକି ମୁଣ୍ଡରେ ହିଁ ଛିଡ଼ା ହୋଇଛନ୍ତି ।

ତାହାପରେ ତ ଅରଟ ଧରି ଶତେ ଗଜ ସୂତା କାଟିବେ । ତାଙ୍କ ନିଷ୍ଠା ଦେଖି ଆଉ ବାବୁମାନେ ବି ତାଙ୍କୁ ଖାତିର କରନ୍ତି ଢେର୍ । ପୁଣି ଭିଡ଼ି କାମ ପଡ଼ିଲେ ତ ତାଙ୍କ ପାଖେ ସମସ୍ତେ ହଟିଯିବେ । ଆଜି ଦଶ କୋଶ ଚାଲିବାକୁ ହେବ ତ ଚାଲ । ରାତି ତିନି ପହରେ କାହାର ମଡ଼ା କାଢ଼ିବାକୁ ଦରକାର ପଡ଼ିଲା ତ ପରୁଆ ନାହିଁ । ଖାଇବା ପିଇବାରେ ଯାହା ମିଳିଲା ଖୁସି । ଭାତ ନ ମିଳିଲେ ଚୂଡ଼ା ମୁଢ଼ି । କିଛି ନ ଥିଲେ ଖାଲି ଗୁଡ଼ଜଳ ମୁଠାଏ ବଟୁରାଇ ଲୁଣଠାଏ ହେଲେ ବି ତାଙ୍କର ଓଳିଏ ଚଳିଗଲା ।

ତାଙ୍କ ଢଙ୍ଗ ସାଥିରେ ନାଥବାବୁଙ୍କ ଢଙ୍ଗ ଛଡ଼ା ଅର୍ଜୁନ ବାବୁ ହେଲେ, କି ଜପ୍ପୀବାବୁ ହେଲେ, କାହାରି ଚଳଣି ମିଶେ ନାହିଁ । ଯେତେ ହେଲେ ସେ ଦିହେଁ ସହରିଆ । ପୁଣି ଜପ୍ପୀବାବୁ କେତେ ଆଡ଼ ବୁଲିଛନ୍ତି । ଗୁନ୍ଦବାଲି ବାଟେ ତାଙ୍କର କଲିକତାରେ କାରବାର ହେଉଥିଲାବେଳେ କଲିକତା ବି ଯାଇଛନ୍ତି । ତାଙ୍କ ବାପାଙ୍କୁ ସେ

ତରଫରେ ନ ଜାଣେ କିଏ ? କଣାମଣି କଲିକତା କଥା ଯାହା କ ଜାଣିଛନ୍ତି, ଶୁଣିଛନ୍ତି, ସବୁ ତାଙ୍କ ପିଉସୀପୁଅ ଭାଇ ଜରିଆରେ । ସେ ଚଟକଲରେ କାମ କରେ । ତାଙ୍କ ଗାଁରୁ ଆଉ ଦଶ ପନ୍ଦର ଲୋକ ବି କଲିକତା ଯା'ଆସ କରନ୍ତି । ସେଥିରୁ କଣାମଣି ଜାଣି-ଥିଲେ କଲିକତାକୁ ଖାଲି କୁଲି, ବେଷ୍ୟା ଯାନ୍ତି । ବୃଦ୍ଧବାଲି ବାଟେ ଜାହାଜରେ କାରବାର କରି ଓଡ଼ିଶାରୁ ବଡ଼ଲୋକ ହୋଇଛନ୍ତି, ଏହା ତ ସେ ଦେଖି ନ ଥିଲେ, କି ଶୁଣି ନ ଥିଲେ; କାହୁଁ ଜାଣିବେ ? ଜୟୀବାବୁ ବେଳେ ବେଳେ 'ଖାଇବାକୁ' ନ କହି 'ଖାଇତେ' କହି ପକାନ୍ତି, 'ଗୋଡ଼' ନ କହି 'ଗୁଡ଼' କହନ୍ତି । ବାଲେଶ୍ୱରିଆ କଥା । ଯାହା କହନ୍ତୁ ପଛେ ସେ ବେଶି ପଢ଼ିଛନ୍ତି, ଜାଣିଛନ୍ତି । ତାଙ୍କ ଚଳଣି ତ ଟିକିଏ ସୁକୁମାରିଆ ହେବ । ଯେତେ ହେଲେ ବଡ଼ଘର ପୁଅ । ବାପାଙ୍କୁ ତାଙ୍କର ସେ ତରଫରେ ନ ଜାଣେ କିଏ !

ବାପା ଓକାଲତିରେ ସେତେ ଜଣାଶୁଣା ନ ହେଲେ ବି କଂଗ୍ରେସରେ ବାହାରି ତାଙ୍କ ନାଁ ଖବରକାଗଜରେ ଛପା ହେଲାଣି । ପୁଣି କଟକ ସହରରେ ଏମିତି କିଛି କଥା ନାହିଁ ଯାହାକି ତାଙ୍କ ପୁଅ ଅର୍ଜୁନଙ୍କୁ ଅଜଣା । ନାଚ ତାମସା, ଖେଳ କଉତୁକ ସବୁ ସେ ଦେଖିଛନ୍ତି । କ୍ରିକେଟ୍ ମେଚ୍, ଫୁଟବଲ୍ ମେଚ୍, ଦେଖା ଯାଉ— କେଉଁ କଥା ସେ ନ ଜାଣନ୍ତି । ପୁଣି ସବୁ ସଭାସମିତିରେ ତ ଆଗ ହୋଇ ବାହାରିଛନ୍ତି । ବାପା ସିନା ତାଙ୍କର ମଫସଲରୁ ଯାଇ ସହରରେ ରହିଲେ; ସେ ନିଜେ ତ ସହରରେ ଜନ୍ମ, ଆଉ ତାଙ୍କୁ ମଫସଲିଆ ବୋଲି କିଏ କହିବ ! ହେଲେ ମଫସଲରୁ ଆସି ତାଙ୍କର ଟିକିଏ ହୋଇ ଗର୍ବ ନାହିଁ । ସବୁରି ସାଥିରେ ଭାଇ ବନ୍ଧୁ ହିସାବ ।

ହରିପୁରକୁ ଏ ତିନୋଟି ବାବୁ ଆସିଲା ଦିନୁଁ ଗାଁ ଲୋକେ ତାଙ୍କ ବିଷୟରେ ପଚରା ଉଚରା କରି ବୁଝିଲେଣି । ନାଥ ବାବୁଙ୍କ ବାପା ନରହରି ଦାସଙ୍କୁ ଏ ସବୁ ସୁଖ ଲାଗୁ ନ ଥାଏ । ପୁଅ ଉପରେ ଚିଡ଼ିମିଡ଼ି ହୋଇ ତୁନି ରହନ୍ତି । ଆଉ କରିବେ କଣ ? ଭଲ ଲୋକ ଘର ପାଠୁଆ ପିଲା ତିନିଟା, ତାଙ୍କୁ କଣ ତଡ଼ିଦେବେ ?

ହରିପୁର ଗାଁର ଲୋକଙ୍କ ଭିତରେ ଏ ବାବୁମାନେ ଆସି ଗୋଟାଏ ଚହଳ ପକେଇଦେଲେ । ପାଠଶାଠ ପଢ଼ି ପୁଣି ବଡ଼ ଘରର ପୁଅମାନେ ଚାକିରି ବାକିରି ନ କରି ଏମିତି ଯେ ଗାଁ ଗାଁ ବୁଲୁଛନ୍ତି, ଖାଲି କଣ ମାହାଲିଆ ? କେଉଁ କାଳେ ତ ଏ କଥା ଶୁଣା ନ ଥିଲା । ସମସ୍ତେ ଖାଲି ଅରଟରେ ସୂତା କାଟିଲେ କୁଆଡ଼େ ବିଦେଶୀ ସରକାର ଗୁଡ଼ ପଳାଇବ ! ଲୁଗା ବାବଦରେ ଦେଶରୁ ପରା ଷାଠିଏ କୋଟି ଟଙ୍କା ବର୍ଷକୁ ବାହାରି ଯାଉଛି । ସେତିକ ବନ୍ଦ ହେଲେ ତ ବିଲାତି ବ୍ୟବସାୟୀଙ୍କର ଆୟ କମିଗଲା । ନଇଲେ କାହିଁକି ବାବୁମାନଙ୍କୁ ଗୋଡ଼େ ଗୋଡ଼େ ପୁଲିସ ଏମିତି ଜଗନ୍ତା । ଏହା ଭିତରେ ନିଶ୍ଚେ ହେଲେ କିଛି ମରମ ଥିବ ବୋଲି ତ !

"ତୁ ପୁଣି କରଜ କଲୁ କେବେ ରେ, ଗୌର ? ମତେ ତ କାହିଁ ଏ କଥା କହିନୁ ?" ବରଜୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ମୁଁ କଣ କରଜ କରିଥିଲି କି ଭାଇ ! କରଜ କରିଥିଲେ ନିତା କରନ୍ତି, ମହଜନା ମାଗନ୍ତି ନା"—ଗୌରଙ୍ଗ ଉତ୍ତର ଦେଲା ।

"ସେମାନେ କିଏ ? ତେବେ ତୋ ନାଁରେ ଏ ନୋଟିସ୍ ହୋଇଛି କିଆଁ ?"

"ମୁଁ ପର ତାଙ୍କ ଜାମିନ୍ ହୋଇଥିଲି । ତାଙ୍କର ତ ଘରବାଡ଼ି କିଛି ନାହିଁ, ତାଙ୍କ ଟଙ୍କା ମୋ ଛଡ଼ା ଆଉ ଦେବ କିଏ ?"

"ତେବେ ତୁ ନିଜେ କିଛି ହେଲେ ଧାରି ନାହୁଁ ?"

"ଏକ ଛଦାମ ବି ନୁହେଁ । ଓଲଟି ମୋର ଅଂଶ ଅମାନତ ବାବତରେ ଟଙ୍କା ପଚିଶ ସରିକି ଜମା ଥିବ ।"

"ଏ ତ ବଡ଼ ଅନ୍ୟାୟ କଥା !"

"ଅନ୍ୟାୟ କଣ ଭାଇ ! ଗାଁ ଭିତରେ ଯେଉଁମାନେ ଚଳପକ୍ଷ, ତାଙ୍କର ତ ଆଉ ପାଞ୍ଚଟି ଗରିବଗୁରୁବା ଭାଇଙ୍କୁ ଟିକିଏ ସାହାଯ୍ୟ କରିବା ଲୋଡ଼ା ।"

"ସାହାଯ୍ୟ କରିବା ଲୋଡ଼ା ସିନା, ତେବେ କଣ ଏହିପରି ସାହାଯ୍ୟ । ତୋର ନିଜର ଲୋଡ଼ା ନାହିଁ; ଆଉ ଜଣକ ପାଇଁ ଜାମିନ ହୋଇ ଟଙ୍କା ଦିଆ ନିଆ କରେଇବୁ, ଶେଷରେ ବିନା ଦୋଷରେ ତୁ ଇ ସବୁ ଟଙ୍କା ଶୁଝିବୁ !"

"ମୁଁ କଣ ଏତେ କଥା ବୁଝିଥିଲି କି ? ସେଥର କଟକରୁ ଚନ୍ଦ୍ରନାଥ ବାବୁ ଓକିଲ ଆଉ ବେଙ୍କ ଇଲାକାର ଜଣେ ବଡ଼ ହାକିମ ଆସିଥିଲେ । ତାଙ୍କ କଥାରେ ମନଟା ମୋର ମାନିଗଲା ।"

"ଦୟାନିଧି ବାବୁ କିଏ ? ଆମର ଏଇ ଅର୍ଜୁନବାବୁଙ୍କ ବାପା ତ ନୁହନ୍ତି ?"—ବରଜୁ ପଚାରିଲା ।

"ହେଇଥିବେ । ସେ ତ ମୋଟା ଖଦଡ଼ ଲୁଗା, ଜାମା ପିନ୍ଧି ଆସିଥିଲେ । ପୁଣି ପାଖରେ ଗୋଟାଏ ଅରଟ ଧରି ବସିଥାନ୍ତି । ଏଣେ ଆମ ସାଙ୍ଗେ ଗପ କରୁଥାନ୍ତି, ତେଣେ ଅରଟରେ ସୂତା କାଟି ଲାଗିଥାନ୍ତି । ଖାଲି ସାଧାରଣ ମଣିଷ ।"

"ତେବେ ତ ତାଙ୍କ ଛଡ଼ା ଆଉ କେହି ନୁହ ! ଆଚ୍ଛା, ତହିଁରୁ କଣ ହେଲା ?"

ଗଉରା କହିଲା, "ମୁଁ କଣ—ସୁଆଁଳି, ଟିକରପଡ଼ା, ଘାଟିଖିଆ, ଫିରଫିରା, ବଡ଼େଇବାଙ୍କ—ସବୁଆଡ଼ୁ ଲୋକ ଆସି ରୁଣ୍ଡ ହେଇଥାନ୍ତି ଆମ ଗାଁରେ ।" ଦୟାନିଧି ବାବୁ କହିଲେ, ସେ ତ କଟକରେ ଓକିଲାତି କରନ୍ତି; ସେ କାହିଁକି ଦୁଇ ଦିନ କାଳ ନିଜ ବେଉସା ମାଟି କରି ଆଣୁ ଏ ପାଣି କାଦୁଅରେ ଆମ ଗାଁକୁ ଆସିଲେ ? ସେ ଆମର କଉଁ ଭାଇ ବନ୍ଧୁ, ନା ପଡ଼ିଶା ଅଡ଼ିଶା ? ସେ ଆମ ପାଇଁ ଏତେ କଷ୍ଟ ସହି ଆସିଲେ, ପୁଣି ବେଙ୍କ ମଧ୍ୟ ଆମ ଅସୁବିଧା ଘୁଞ୍ଚାଇବା ପାଇଁ ଋଣ ମଞ୍ଜୁର କରୁଛି । ତା ହେଲେ ଆମେ ସେ ଗାଁ ଭିତରେ ଜଣେ ଅଧେ ଚଳପଣ-ଧର ଅଛୁଁ, ଦଶ ପନ୍ଦର ମାଣ ଚାଷ କରୁଛୁଁ, ଆମ ଗାଁ ଭିତରୁ ଯାହାଙ୍କର ମାଣେ କଣେ ନାହିଁ, ତାଙ୍କ ଚଳାଚଳ ପାଇଁ ଆମେ ଜାମିନ ହୋଇ ଠିଆ ହେଲେ କେତେ ବଡ଼ ପୁଣ୍ୟ କରିବୁଁ ! ଦୟାନିଧିବାବୁ ପୁଣି କହିଲେ ।"

ଶରଣ ହୋଇ ବରଜୁ କହିଲା, "ଆଚ୍ଛା, ଦୟାନିଧି ବାବୁ ସେ କଥା କହିଲାବେଳେ ତାଙ୍କୁ ପଚାରିଥିଲ କି ସେଉଁ ଦୁ'ଦିନ

କଚେରୀ ମାଗ୍ କରି ସେ ଆସିଥିଲେ, ସେ ବ୍ୟାଙ୍କରୁ ଗସ୍ତ-ଖର୍ଚ୍ଚା ପାଇବେ କି ନାହିଁ ?"

"ସେ କଥା ଆମେ କିମିତି ତାଙ୍କୁ ପଚାରନ୍ତୁ, ଭାଇ ! ସମିତି ଇଲାକାର ଯେଉଁ ହାକିମ ଜଣକ ଆସିଥିଲେ, ସେ ବି କେତେ ବୁଝେଇ ଶୁଝେଇ କହିଲେ । ଗାଁ ଲୋକଙ୍କ ଭିତରେ ଏକତା ରହିଲେ ସମସ୍ତଙ୍କର ସେଥିରେ କେତେ ଉପୁଗାର ଅଛି । ପରର ଉପୁଗାର କଲେ ସ୍ୱର୍ଗବାସ ହୁଏ ବୋଲି ଶାସ୍ତ୍ର କହୁଚି; ଆମ ନିଜ ଭିତରେ ମନ ଅମେଳରୁ ସିନା କଳି ଝଗଡ଼ା, ଝୁଣ୍ଟି ମାରପିଟ, ମାଲିମକଦ୍ଦମା ହୋଇ ଘର ଘର ଉଚ୍ଛନ୍ନ ହଉଚି ।"

"ସେତିକି ହଉ, ଗଉରି । ମୁଁ ସେ ହାକିମକୁ ପଚାରିଥାନ୍ତି, ମାସକୁ ତାଙ୍କ ଦରମା କେତେ, ଗସ୍ତଖର୍ଚ୍ଚା କଣ । ଲୋକଙ୍କ ଉପକାର କରିବା ପାଇଁ ସମିତି ଇଲାକାକୁ ଆସି ତାଙ୍କ ନିଜର ଆଗ କି ଉପକାର ହେଇଚି; ଦରମା, ଗସ୍ତଖର୍ଚ୍ଚା ଛାଡ଼ି ଲୋକଙ୍କ ଭଲ କରିବାକୁ ସେ କେତେ ଅଧିକା ଭତ୍ତା ପାନ୍ତି ? କେତେ କଣ ଗରିବ ଗୁରୁବାଙ୍କ ପାଇଁ ସେ ନିଜେ ଜାମିନ୍ ହେଇଚନ୍ତି ? ପୁଣି କେତେ ଲୋକଙ୍କ ପାଇଁ ସେ ଜାମିନ୍ ହେବାକୁ ରାଜି ? ଏ ତ ସଫା ମହାଜନ ଖାତକ କାରବାର । ସେଥିରେ ଜଣକୁ ଆଉ ଜଣକର ଜାମିନ୍ କରେଇ ତାଙ୍କ କାରବାରକୁ ସେ ମଜବୁତ କରୁଥିଲେ ସିନା । ସ୍ୱାର୍ଥତ୍ୟାଗ, ପର ଉପୁଗାର—ଏତେ କଥା କହୁଥିଲେ କାହିଁକି ?"

"ଏ ସବୁ କଥା ସେତେବେଳେ କିଏ ଜାଣିଥିଲା କି ଭାଇ ! ବାବୁଭାୟା ପାଠୁଆ ଲୋକେ ଯେତେବେଳେ ଯା କହୁଚନ୍ତି, ଆମେ କି ମାଡ ମୁଣ୍ଡ, କଣ ବୁଝିବୁଁ ? ଏମିତି ସିନା ବାରି ଫୁସୁଲଫୁସୁଲ

କରି ଲୋକଙ୍କୁ ସମିତିର 'ସଭ୍ୟ' କରିଦେଲେ । ପୁଣି ବର୍ଷେ ଛ'ମାସ ପରେ ସେଇ ବେଙ୍କ ଭଲକା ବାବୁମାନେ ଟଙ୍କା ଆଦାୟ ପାଇଁ ଧମକ ଚମକ ଦେଖେଇଲେ । ତା' ପରେ ନଙ୍ଗଳବଡ଼ି, ହଇଜା ପରି କରଜ ସୁଅରେ ଗାଁ ଗାଁ ଏମିତି ଧୋଇଯିବ, ଏତେ କଥା ଆଗରୁ କଏ ହେଲେ ବୁଝି ପାରିଥିଲା !"

ଡିଗ୍ରିଜାରି ନୋଟିସ ଖଣ୍ଡ ଗୌରାଙ୍ଗ ହାତକୁ ବଢ଼ାଇଦେଇ ବରଜୁ କହିଲା, "ଯାହା ତ ହେବାର ହେଇଗଲାଣି, ଟଙ୍କାତକ ଏକ୍ଷଣି ଯୋଗାଡ଼ କରି ଦେଇପକେଇବା ସବୁଠୁଁ ଭଲ । ଆଜ୍ଞା ବେଳେ ତ ଆଜ୍ଞା କଥା । ଯାହା କହନ୍ତି, ବାହାଘର ବେଳେ ବାଇଗଣ ରୁଆ ।"

ନୋଟିସ କାଗଜ ଖଣ୍ଡ ହାତରେ ମୋଡ଼ୁ ମୋଡ଼ୁ ଗୌରାଙ୍ଗ କହିଲା, "ହଁ, ମୋର ସିନା ଅଛି ବୋଲି ଦେବି । ନଇଲେ ଅବା ଜମି ମାଣେ ବିକି ଶୁଝିଦେବି । ହେଲେ ଯାହାଙ୍କର କିଛି ନାହିଁ, ଅବା କେଉଁଠି ମାଣେ କଣେ ଅଛି, ତାଙ୍କ କଥା ଭାବିଲ ଦେଖି ! ଆମ ଗାଁ ବାବନ ମାହିଁକୁ ଦେଖିଲ ତ । କାଲି ସକାଳେ ହଡ଼ା ହ'ଟା ବାନ୍ଧି, ନିଜ ଜମି ସାଙ୍ଗେ ଭାଗ ବଖରା ହ'ମାଣ ଚଷି ତାରି ସେ ସୁଖେ ଦୁଃଖେ ଚଳୁଥିଲା । ଆଜି ଏକାବେଳକେ ଦାଣ୍ଡର ଫକିର । ବେଙ୍କ ଟଙ୍କା ଆଣି ଏଇ ତ ତାର ଶେଷ ଦଶା । ମୋ ଦେଖିବାରେ ପାଖପଡ଼ିଶା ଯେତେ ଗାଁ ଲୋକେ ସମିତି ଟଙ୍କା ଆଣିଚନ୍ତି, କାହାରି ତ ଘର ନ ଭାଙ୍ଗି ନାହିଁ !"

ବରଜୁ ପଧାନ ସବୁ ଶୁଣି ମୁରୁକି ମୁରୁକି ହସୁଥାଏ । "ତୁ ବୁଝିନୁ କିରେ ଗୌରୀ ? କଟକ ସହରକୁ ରଖିବା ପାଇଁ ଯେମିତି

ଶହ ଶହ ଗାଁକୁ ନକ୍ସବଡ଼ିରେ ଉଠେଇଦବାକୁ ପ୍ରସ୍ତୁତ, ସେମିତି ଶହେଟା ମାଟିଘର ନ ଭାଙ୍ଗିଲେ ଖଣ୍ଡେ ପକ୍କା ଘର ତୋଳା ହବ କେମିତି ? ବାବନ ମାଟିର ଜମିବାଡ଼ି ନିଲାମ ହେଲା ତ, ମଧ କଣ ? ଯେତେବେଳେ ଅବା ନିଜର ତିନ ମାଣ ମିଶେଇ ଆଉ କାହାଠୁଁ ଭାଗ ବଖର ଦ'ମାଣ ଚଷୁଥିଲା, ଏବେ ନ ହେଲା ମୂଲ ଲାଗି ଚଳିଲା । ପାଞ୍ଚ ମାଣ ଜମି ଚଷି ଚଳିବା ଆଉ ମୂଲ ଲାଗି ଚଳିବା ଭିତରେ କେତେ ଫରକ ଅଛି ଭଲା ? ପାଞ୍ଚ ମାଣ ଜମିରେ ତାର ପିଲା କୁଟୁମ୍ବ ନିତି କଉଁ ଖିରି ପିଠାରେ ଭାସୁଥିଲେ, ଆଜ କିଛୁ ନ ଥାଇ ଖାଲି କଣ ପେଟ ଭୋକିଲି ପିଉଚନ୍ତି ! ମୋ ବିଚାରରେ ପାଞ୍ଚମାଣ ଛଅମାଣ ଯେଉଁମାନେ ଚଷୁଚନ୍ତି, ତାଙ୍କର ତ ମୂଲ ଲାଗି ଚଳିବା ବେଶି ସୁବିଧା । ଜମି ପାଞ୍ଚମାଣ ଚଷିବା ପାଇଁ ଯେଉଁ ହଳ ଲଙ୍ଗଳ, ବିହନ, ଲଗୁଡ଼ି କରିବାକୁ ପଡ଼େ, ସେ ତ ଯୋଡ଼ା ଛ ଟଙ୍କା ହେଲେ ବାଖର ନ ଟଙ୍କା । ସାନ ଚାଷୀଙ୍କ କଥା ଛାଡ଼ି ଦେଲେ ତୁ ତ ଜଣେ ବଡ଼ ଚାଷୀ, ପୁଣି ଘରେ ତୋର ଜଣେ ହେଲେ ଖାଇବାକୁ ନାହିଁ । ଜମି ଚାଷ କରି କେତେ ଟଙ୍କା ଜମା କରି ରଖିଚୁ ? ପିଲା କୁଟୁମ୍ବ ବଂଶବର୍ଗ ତ ହଇଜାରେ ମଲେ, ଡାକ୍ତର ପିଛୁ କେତାଏ ଟଙ୍କା ଖର୍ଚ୍ଚ କରି ପାରିଲୁ ? ତୋ ହାତରେ ଟଙ୍କା ଦ' ହଜାର ଥିଲେ ଶହେ କୋଶ ଦୂରରୁ ତ ଡାକ୍ତର ଡାକି ପାରିଥାନ୍ତୁ । ବେଙ୍କ ହଉ, ସରକାର ହଉ, ସବୁରି ବାଟ ଗୋଟାଏ— କଣ ଜାଣୁ ତ ? ଶହେ ଝିଣ୍ଟିକା ମାରି ଗୋଟିଏ ବଣି ପୋଷିବା । ଗାଁ ମହାଜନ, ସାହୁକାର ଆଗେ ଯେତେବେଳେ ଗରିବ ଗୁରୁବାଙ୍କ ରକ୍ତ ଶୋଷୁଥିଲେ, ସେତେବେଳେ ଗାଁ କଥା ଗାଁ ଭିତରେ ଲୁଚି ଛପି ରହୁଥିଲା । ଏବେ ସରକାରଙ୍କ ସୁପାରିଶରେ ବଡ଼ ବଡ଼ ବ୍ୟବସାୟୀ, ଚୁକଶିଆ, ଓକିଲ, ଜମିଦାରଙ୍କର ବଳକା ଟଙ୍କାରେ

ବେଙ୍କ ଗଢ଼ାଯାଇ କଣ୍ଟନ, ମେନେଜର, ନଥି ଶିରସ୍ତାରେ କଥାଟା ବାହାରେ ଖୋଲ ଜଣା ପଡ଼ିଲା । ଯେଉଁମାନେ ସମିତିରୁ ଟଙ୍କା ନ ନେଇ ମହାଜନଠାରୁ ନଅନ୍ତି, ସେମାନେ ଗାଁ ଭିତରେ ଫକଡ଼ି ହୁଅନ୍ତି । ଆଉ କୁଆଡ଼େ ତାଙ୍କ ନାଁ ପଡ଼େ ନାହିଁ । ଏମିତି ଜାଣି ଶୁଣି ଫକଡ଼ି ହେଲେ ବେଙ୍କ ତ ଭଲ ଛଡ଼ା ମନ୍ଦ କିଛି କରି ନାହିଁ ! ଲୁଚି ଛପି ଯାହା ଘଟୁଥିଲା, ବାହାରେ ସେହି ସତଟାକୁ ଧରି ପକେଇ ଦେଇଚି । ଗାଁ ମହାଜନ ଠକାମି କି ମୂଲାହଜା କରି ଯେଉଁ ବେଆଇନ କାମ କରୁଥିଲା, ସେଥିପାଇଁ ବେଙ୍କ ଆଇନ ବାନ୍ଧି ଦେଇଚି । ଗାଁର ମୂର୍ଖ ମହାଜନଠୁଁ ଶିକ୍ଷିତ ସରକାର ଯାଙ୍କେ ସମସ୍ତେ ଯେ ଗୋଟାଏ ବାଟରେ ଚାଲିଛନ୍ତି, ସମବାୟ ସମିତି ଏ ବିଷୟରେ ସବୁରି ଆଖି ଖୋଲ ଦେଇ ଭାରି ଉପକାର କରିଚି ।”

ଚୈତନ୍ୟ ମାଟି ଆସି କହିଲା, “ଗଉରି ଦାଦ, ମେନେଜର ବାବୁ ଡାକୁଚନ୍ତି ।”

“ଆଉ ଡାକୁଚନ୍ତି କାହିଁକି, ଯାହା ତ କଚିରିରେ ଏଣିକି ହବ । ହଉ ଚାଲ । ଆଉ ସବୁ ଗଲେଣି ?”—ଗଉରି ପଚାରିଲା ।

× × × ×

ଚୈତନ୍ୟ ମାଟି ସମିତିର ଡାକୁଆ ନମୋଦ ହୋଇଛି । ନିଜେ କରଜ ନେବା ଛଡ଼ା ବାବୁମାନେ ଆସିଲେ ସଭ୍ୟମାନଙ୍କୁ ଡାକି ଆଣି ହାଜର କରାଇବା ତାହାର କାମ । ସେଥିପାଇଁ ସେ ମଜୁରି ପାଏ । ଗାଁରେ ଥିବା ନ ଥିବା ସଭ୍ୟଙ୍କର ଲମ୍ବା ତାଲିକା ଦେଇ କିଏ କୁଣିଆ ଘର, କିଏ କାଞ୍ଜି ହାଉସ୍, କିଏ ବା ବଦ୍ୟ ପାଖକୁ ଯାଇଚି, ଆଉ କିଏ କାହିଁ ନ ଯାଇ ମଧ ଗାଁ ଭିତରେ ଦେଖିବାକୁ ମିଳୁ ନାହିଁ, ପୁଣି ବାକି କେଉଁମାନେ ଯାଇ ହାଜର ହେଲେଣି ସବୁରି କଥା କହିଗଲା ।

ଗୌରାଙ୍ଗ ବରଜକୁ କହିଲା, "ଭାଇ, ତୁମେ ଯିବ କି ?"

"ହଉ ଏବେ ଚାଲ, ଗଲେ ମାରା କଣ ? ତେବେ ଯାଇ ବି ଲାଭ କଉଁାକର ନାହିଁ । ଅମିନଗିରି କରୁଥିଲା ବେଳେ ବହୁତ ଗାଁ ବୁଲି ଏଇ ସମବାୟ ସମିତିର କାମ ମୁଁ ଦେଖିଚି । ଆଉ ଅଧିକା ଦେଖିବି କଣ !"

ଗାଁ ମଝିରେ ଖଣ୍ଡେ ସମିତି ଘର ତିଆରି ହୋଇଛି, ସମିତି ସଭ୍ୟଙ୍କ ଚାନ୍ଦା ଆଉ ମୂଳରେ । ସମିତିର ସାଧାରଣ ସଭା ପୁଣି କମିଟି ବୈଠକ ଏଠାରେ ହୁଏ । ବାବୁମାନେ ପରିଦର୍ଶନ କରିବାକୁ ଆସିଲେ ସେଇ ଘରେ ରହନ୍ତି । ସେଠାରେ ପହଞ୍ଚି ବରଜ ଯାହା ଦେଖିଲା, ସେଥିରେ ଏକାବେଳେ ତାଟକା ହୋଇପଡ଼ିଲା । ଘର ଭିତରୁ ମେନେଜର ବାବୁଙ୍କ ପାଟି ଶୁଭୁଛି । ସମିତିର ସଭ୍ୟମାନଙ୍କ ପ୍ରତି ଯେଉଁ ଭାଷାରେ ସେ ଚିତ୍କାର କରୁଥାନ୍ତି, ତାହାକୁ କେହି ସୁଦ୍ଧା ସଭ୍ୟଭାଷା ବୋଲି କହିବ ନାହିଁ । ପୁଣି ଘର ବାହାରେ ଟାଇଁଟାଇଁଆ ଖରାରେ ଚାରିଜଣ ଲୋକ ହାତ ଯୋଡ଼ି ଠିଆ ହୋଇ ରହିଥାନ୍ତି ।

ତାଙ୍କ ପାଖକୁ ଯାଇ ବରଜ ପଚାରିଲା, "କି ରେ, ଏ ଖରା ତାତିରେ ଏମିତି ଛିଡ଼ା ହେଇଚ କାହିଁକି ?"

ଉତ୍ତର ହେଲା, "କଣ କରିବୁଁ, କିସ୍ତି ଟଙ୍କା ଦେଇ ପାରିନୁଁ ।"

"କେତେ ବେଳ ଯାଏ ଇମିତି ଠିଆ ହେଇଥିବ ?"

"ସମସ୍ତଙ୍କ ହିସାବ ମୁକାବିଲା ସରିବ, ଦିଆ ନିଆ ସରିବ, ଶେଷକୁ ଯେତେବେଳେ ହୁକୁମ ହବ ।"

"ହୁକୁମ କରିବ କିଏ ?"

ବାହାରେ ବରଜକୁ ଛିଡ଼ା ହୋଇ ଗପ କରୁଥିବାର ଦେଖି ଘର ଭିତରକୁ ମେନେଜର ବାବୁ ତାକୁ ଡାକି ପଠାଇଲେ ।



କ ରେ, ଏ ଖର ଛାତରେ···ଛୁଡ଼ା ହେଇଚ କାହିଁକ ? [ପୃଷ୍ଠା ୧୦୨

ଷ୍ଟର ଜଣ ଲୋକଙ୍କୁ ଏ ଭାବରେ ଜ୍ୟୋତ୍ସ୍ନାମୟ ଉଦୁଉଦଆ ଖରାରେ ଛୁଡ଼ା ହୋଇ ସିଝୁଥିବାର ଆଖି ଆଗରେ ଦେଖି, ପୁଣି ତାହାର କାରଣ ବୁଝି ସାରି, ଛାଇତଳେ ବସି ମେନେଜର ବାବୁଙ୍କ ସଙ୍ଗେ ଗପ କରିବାକୁ ଯାଏଁ ଯାଏଁ ତା ଗୋଡ଼ ଦ'ଟା ଦୁଆର ମୁହଁରେ ଅଟକି ଗଲା । ଭିତରକୁ ନ ପଶି ସେ ପଚାରିଲା, “ଦଣ୍ଡବତ, ମେନେଜର ବାବୁ ! କାହିଁକି ଡାକୁଛନ୍ତି ?”

ମେନେଜର ବାବୁ ଘରର ଦୁଆର ମୁହଁ ଆଡ଼କୁ ବସିଥାନ୍ତି । ସବୁରି ଅଣି ଟଙ୍କାର ଚେହେରାଟି । ପାଖରେ ସମିତିର ବନ୍ଧ ବସ୍ତାନ । ସମିତିର ସମ୍ପାଦକ ଓ ବ୍ୟାଙ୍କର ଜଣେ ପରିଦର୍ଶକ କାଗଜ ଶିରସ୍ତା ଖାତାପତ୍ର ଦେଖୁଥାନ୍ତି । ଭିତରକୁ କୋଡ଼ିଏ ପଚିଶ ସଣ୍ଠକ ସଭ୍ୟ ନଚାନ୍ତ ଅସଭ୍ୟ ଓ ଅପରିଚ୍ଛନ୍ନ ପରିଚ୍ଛଦ ପିନ୍ଧି ଚୁନ୍‌ଚାନ୍ ବସିଥାନ୍ତି । ବରଜୁକୁ ଦୁଆର ମୁହଁରେ ଠିଆ ହୋଇ ରହିଥିବାର ଦେଖି ମେନେଜର ବାବୁ କହିଲେ, "ତୁମ ବିଷୟରେ ମୁଁ ସବୁ ଶୁଣିଛି, ଆସ ଭିତରକୁ ।"

"ନାହିଁ ବାବୁ, ଭିତରକୁ ଯିବି କଣ—ତେବେ ଗୋଟାଏ କଥା ପଚାରିବାକୁ ଇଚ୍ଛା ହଉଛି ।"—ବରଜୁ କହିଲା ।

"କଣ କଥା ?"

"କଥା କଣ କି—ଏଇ ଯେ ଗୁରିଜଣ ଲୋକ ଖରା ତାତିରେ ଠିଆ ହୋଇ ସିଝୁଛନ୍ତି, ଏଥିପାଇଁ ଦାୟୀ କିଏ ? କଉଁ ଆଇନ ବଳରେ ଏପରି ଦଣ୍ଡ ଦିଆଯାଉଚି ?"

ଲୋକଟାର ସାହସ ଓ ଦମ୍ଭ ଦେଖି ମେନେଜର ବାବୁ ଆଗ ବିଶ୍ବାସ କରି ପାରିଲେ ନାହିଁ । ଏତେ ଲୋକଙ୍କ ଆଗରେ ବରଜୁ ମୁହଁରୁ ହଠାତ୍ ଏଭଳି ପ୍ରଶ୍ନ ଶୁଣିବେ ବୋଲି ସେ ଜମାରୁ ପ୍ରସ୍ତୁତ ନ ଥିଲେ । ତାଙ୍କ ମୁଣ୍ଡ ଚହଲିଗଲା । ଗୋଟାଏ ଅତି ଅପମାନକର କଡ଼ା କଥା ତାଙ୍କ ମୁହଁରୁ ବାହାରି ପଡ଼ୁଥିଲା । ତେବେ ବରଜୁର ଆଖି ଦୁଇଟାକୁ ଗୁହିଁ ତାଙ୍କ ଆଖି ପୋଡି ହୋଇଗଲା । ଦଣ୍ଡେ କାଳ ନିଜକୁ ସମ୍ଭାଳି ନେଇ ସେ କହିଲେ, "ଓ, ଏଇ କଥା ପଚାରୁଛ ?"

ଏଥିପାଇଁ ଦାୟୀ ସେମାନେ ନିଜେ । ଆଉ ଯେଉଁ ଆଇନ କଥା ଜାଣିବାକୁ ଗୁହଁ—ପଢ଼ିବଟି ଧଡ଼ବାବୁ, ସାଧାରଣ ସଭାର ପ୍ରସ୍ତାବଟା !"

ଧଡ଼ବାବୁ ଓରଫ ଧଡ଼ଆ ମହାପାତ୍ରଙ୍କ ଦେହଟା ସତକୁ ସତ ଏମିତି ଧଡ଼ଆ ଯେ, ମୋଟା ଖଦଡ଼ ଜାମା ଖଣ୍ଡେ ପିନ୍ଧି ଦେହେରୁ-ଟିକୁ ଢୋଡ଼ାଇବାକୁ ଯେମିତି ସେ ଚେଷ୍ଟା କରୁଛନ୍ତି । ମାଟ୍ରିକ୍ ଫେଲ୍ ହୋଇ ଯେତେବେଳେ ସେ ଚାକିରି ଖୋଜିଲେ, ସେତେ-ବେଳେ ନିଜର ଦେହର ଓ ନିଜ ବିଦ୍ୟାକୁ ଗୁହିଁ ବୁଝିଲେ ଯେ କୌଣସି ସରକାରୀ ବିଭାଗ ତାଙ୍କୁ ଲଭରେ ଶୁଦ୍ଧା ଗ୍ରହଣ କରିବାକୁ ରାଜି ହେବ ନାହିଁ । ତେଣୁ ଏହି ଅଧା ସରକାରୀ ଚାକିରି ଖଣ୍ଡ ପାଇ ତାଙ୍କର ପୂରା ସନ୍ତୋଷ ଆସିଥିଲା । ବେଙ୍କ ଦରମା ଓ ଗୁସ୍ତ ଟଙ୍କାଟା ତାଙ୍କ ହାତରେ ପଡ଼ୁଥିଲା ବୋଲି ସେ ସବୁବେଳେ ଭାବୁଥିଲେ । କଟକ ଜିଲାର କୌଣସି ଗାଁ ମଝିରେ ବୋହିଆ ମୂଲ୍ରେ ନିଜର ବାକ୍‌ସ ବିଛଣା ଥୋଇ, ପଛରେ ଧଡ଼ବାବୁ ଚାଲିବାବେଳେ କେହି ଗାଁଲୋକ କଲିକତାଫେରନ୍ତା ବୋଲି ତାଙ୍କୁ ବିଚାର କରି, ସେଠାର ଖବର ବୁଝୁଥିଲେ । ତହିଁରେ ତାଙ୍କର ଆଦୌ ମାନହାନି ହେଉ ନ ଥିଲା ।

ଧଡ଼ବାବୁ ପଢ଼ିଲେ, ପ୍ରସ୍ତାବଟିରେ ଲେଖାଅଛି, 'ଧାର୍ଯ୍ୟ ତାରିଖରେ ଯଦି କେହି କିସ୍ତି ଟଙ୍କା ଦେଇ ନ ପାରେ, ସମସ୍ତେ ଯେପରି ସ୍ଥିର କରିବେ ସେହିପରି ଦଣ୍ଡ ତାଙ୍କୁ ଦିଆଯିବ ।'

"ଏଠି ଯେତେ ଗୁଡ଼ାଏ ସଭ୍ୟ ବସିଚନ୍ତି, ସମସ୍ତେ ଏ ପ୍ରସ୍ତାବରେ ଦସ୍ତଖତ ଦେଇଚନ୍ତି । ଏବେ ବୁଝିଲ ?"—ମେନେଜର ବାବୁ କହିଲେ ।

"ତେବେ ସାଧାରଣ ସଭା ଯେ ସଭ୍ୟମାନଙ୍କୁ ଯାହା ଇଚ୍ଛା ଦଣ୍ଡ ଦେଇପାରେ, ସେ କଥା ସମିତି ଆଇନର କଉଁ ଦଫାରେ ଅଛି ?"

ଏଥର ମେନେଜର ବାବୁ ଆଉ ନିଜକୁ ସମ୍ଭାଳି ନ ପାରି କହିଲେ, "ଏ ସବୁ କଥା ତୁମେ ପଚାରିବାକୁ କିଏ ?"

ବରଜ୍ ପଧାନ ପୂର୍ବପରି କହିଲା, "ମୁଁ ଜଣେ ସାଧାରଣ ଗାଉଁଲି ଲୋକ, ଯେ କି ଆପଣଙ୍କ ସମିତିରୁ କାଣି କଉଡ଼ିଟାଏ ଧାରେ ନାହିଁ । ମୁଁ ବରାବର ଶୁଣି ଆସୁଚି, ସମିତି ଗାଁ ଲୋକଙ୍କର ସବୁ ରକମର ଉନ୍ନତି, ଉପକାର ସୁବିଧା କରି ଦବାକୁ ବାହାରିଚି । ତେବେ ସବୁଠାରେ ଠିକ୍ ଓଲଟା କଥା ଦେଖୁଚି । ସେଥିପାଇଁ ଆପଣଙ୍କ ପରି ଜଣେ ବଡ଼ ବାବୁଙ୍କୁ ଦେଖି ଅସଲ କଥାଟା ବୁଝିବାକୁ ଯାହା ପଚାରୁଥିଲି ।"

ମେନେଜର ବାବୁଙ୍କ କ୍ରୋଧ ସପ୍ତମକୁ ଉଠିଗଲା—"ମୁଁ ଜାଣେ, ତୁମେ ଗୌରାଙ୍ଗ ଶେଣ ପାଇଁ କହିବାକୁ ଆସିଛ । ଏମିତି କଥାବାର୍ତ୍ତା କରି ତୁମେ ତାକୁ ରଖିପାରିବ ପରା ? ଜାଣ, ଖାଲି ନିତା କଣ୍ଡରା, ମହନା ମାଝିଙ୍କ ପାଇଁ ନୁହେ, ସମିତିର ସବୁ ଟଙ୍କା ପାଇଁ ମଧ୍ୟ ଗୌରା ଦାୟୀ । ସମିତିର ମୂଳ ମନ୍ତ୍ର ହେଉଛି, ସମସ୍ତେ ପ୍ରତ୍ୟେକଙ୍କ ପାଇଁ ଓ ପ୍ରତ୍ୟେକେ ସମସ୍ତଙ୍କ ପାଇଁ ଦାୟୀ । ଆମେ ଇଚ୍ଛା କଲେ ଏକା ଗୌରାଠାରୁ ବେଙ୍କର ସବୁ ଟଙ୍କା ନିଲାମ ହୋକ୍ କରି ଆଦାୟ କରିନେବୁଁ ।"

ବରଜୁ ପଧାନ ମୁରୁକି ହସି କହିଲା, "ଏତିକି କଥା ତ ବୁଝିବାକୁ ମୁଁ ଲୋଡ଼ୁଥିଲି, ମେନେଜର ବାବୁ ! ତା' ହେଲେ ଏ

ଯେ ସମିତି, ଲୋକଶିକ୍ଷା, ନିଜ ଗୋଡ଼ରେ ନିଜେ ଛିଡ଼ା ହେବା, ମହାଜନଠାରୁ ଲୋକଙ୍କୁ ଉଦ୍ଧାରିବା, କୃଷି ମୂଳିଆଙ୍କ ଉନ୍ନତି କରିବା, ସଚ୍ଚା ହେବା, ଯାଇ ଚଡ଼ଶାଙ୍କୁ ସାହାଯ୍ୟ ଦବା—ସବୁ ଖାଲି ବାହାର ଦେଖାଣି । ପଞ୍ଚାୟତ, ସାଧାରଣ ସଭା ଖାଲି କାଗଜପତ୍ର ଦୋରସ୍ତ ରଖିବା ପାଇଁ । ମୂଳ କଥାଟି ହଉଚି ଧନୀ, ବଡ଼ଲୋକଙ୍କ ବଳକା ଟଙ୍କା ବେଙ୍କ ଜରିଆରେ ଲୋକଙ୍କ ଭିତରେ କରଜ ଲାଗୁଚି, ଆଜି ତାଙ୍କର ଦଲାଲଭାବେ ଆପଣମାନେ ସେ ଟଙ୍କାଟି ଅସୁଲ କରି ସେମାନଙ୍କର ଆଉ ନିଜ ନିଜର ଉପକାର କରିବାରେ ଲାଗିଚନ୍ତି ।"

ମେନେଜର ବାବୁ ବରଜୁକୁ ନ ଚାହିଁ ଗୌରାଙ୍ଗଙ୍କୁ ପଚାରିଲେ, "ତୁ କିଏ ଏ ଲୋକକୁ ମୋତେ ଅପମାନ ଦେବାପାଇଁ ଡାକି ଆଣିଚୁ ? କିନ୍ତୁ ଜାଣିଥା, ଏହାର ପ୍ରତିଫଳ ନ ଦେଇ ମୁଁ ଛାଡ଼ିବି ନାହିଁଟି !" ତାହା ପରେ ବରଜୁକୁ କହିଲେ, "ବହୁତ ଉପଦେଶ ତୁମେ ଦେଇ ସାରିଲଣି । ଏକ୍ଷଣି ବିଦାୟ ହୁଅ ।"

ବରଜୁ ଦେଖିଲା, ସେଠାରେ ବେଶି ସମୟ ରହିଲେ କ୍ଷତି ଛଡ଼ା ଲାଭ ନାହିଁ । ସେ ଗଉରାଙ୍କୁ ଘେନି ବାହାରିଗଲା ।

ସେ ଦିନ ସାଧାରଣ ସଭାର ବୃତ୍ତାନ୍ତ ବହିରେ ଆଉ ଗୋଟାଏ ଲମ୍ବା ପ୍ରସ୍ତାବ ଲେଖାଗଲା । ମେନେଜର ବାବୁ ଡାକୁଥାନ୍ତି ଓ ସମ୍ପାଦକ ଲେଖୁଥାନ୍ତି । ଅଥଚ ସାଧାରଣ ସଭା ଯାହାଙ୍କର, ସମିତିର ସେହି ସବୁ ସଭ୍ୟ ଜମା ହୋଇଥିଲେ ବି କାହାର ତୁଣ୍ଡ ଫିଟୁ ନଥାଏ । ଉପାୟ କଣ ? ଲୋକଙ୍କୁ ତ ସାଧାରଣ ସଭା କରି ନିଜ କଥା ନିଜେ ବୁଝିବାକୁ କ୍ଷମତା ମିଳିଲା । ଯେମାନେ ଆଗେ

ଯେବେ ତାହା ବଧିମତେ କରି ନ ପାରିଲେ, ମେନେଜର ବାବୁ ବା କଟନ ବାବୁ ତାଙ୍କୁ ବତାଇ ନ ଦେଲେ ଚଳିବ କେମିତି ?

ଆଉ କେତେଗୋଟି ମାମୁଲି ପ୍ରସ୍ତାବ ଭିତରେ ମେନେଜର ବାବୁଙ୍କ ଡାକବା ଅନୁସାରେ ସମିତିର ସମ୍ପାଦକ ଲେଖିଲେ, "ହରିପୁର ସମିତିର ଏହି ସାଧାରଣ ସଭା ସ୍ଥିର କରୁଅଛନ୍ତି କି, ଗୌରାଙ୍ଗ ଶେଣ ନାମକ ଜଣେ ସଭ୍ୟ ବରଜୁ ପ୍ରଧାନ ନାମକ ତାହାର ଜଣେ ପ୍ରୀତି ବନ୍ଧୁକୁ ସମିତିର ଆଉ ସବୁ ସଭ୍ୟଙ୍କର ବିନା ଅନୁମତିରେ ଅଦ୍ୟ ସାଧାରଣ ସଭାସ୍ଥଳକୁ ଆଣି, ତାହା ନାମରେ ଉଗ୍ରୀଜାରି ହୋଇଥିବା କାରଣ ସମସ୍ତଙ୍କୁ ଅପମାନ ଦେଇଅଛି । ନିଜେ ମେନେଜର ବାବୁ ଓ କଟନ ବାବୁ ଏହାର ସାକ୍ଷୀ ଅଛନ୍ତି । ସମିତିର ନିୟମ ବାହାର କାମ କରିଥିବାରୁ ଗୌରାଙ୍ଗ ଶେଣକୁ ସବ-ସମ୍ମତିକ୍ରମେ ଟ୫୲ ( ପାଞ୍ଚ ଟଙ୍କା ) ଜରିମାନା କରାଗଲା । ଏହି ଜରିମାନା ଟଙ୍କା ସହିତ ଗୌରାଙ୍ଗ ଶେଣଠାରୁ ଉଗ୍ରୀଜାରି ବାବଦ ସବୁ ପାଉଣା ଯଥାଶୀଘ୍ର ଆଦାୟ ହୋଇ ତାହାକୁ ସମିତିରୁ ତଡ଼ି ଦିଆଯିବାର ସ୍ଥିର ହେଲା ।"

ଏହି ପ୍ରସ୍ତାବ ଆଉସବୁ ପ୍ରସ୍ତାବ ସଙ୍ଗେ ସମସ୍ତଙ୍କୁ ପଢ଼ି ଶୁଣାଇ ଦିଆଗଲା । କିଏ ଶୁଣିଲେ, କିଏ ନ ଶୁଣିଲେ, କିଏ ବୁଝିଲେ, କିଏ ବା ନ ବୁଝିଲେ; କେହି ଜଣେ ତୁଣ୍ଡ ଫିଟାଇଲେ ନାହିଁ । ସମିତି ନା ସମିତି, ସଭା ନା ସଭା ! ସେଥିରେ କାହାର ଯାଏ କେତେ, ଆସେ କେତେ ? ସମସ୍ତେ ତ ଧାରୁଆ; କଥା ଅଛି କାହା ମୁଣ୍ଡରେ ଯେ କହିବ ? ଟଙ୍କା ଶୁଝି ନ ପାରିବାଯାକେ ଯାହା ଯେତେବେଳେ ଲେଖାପଢ଼ା ହେଉଛି ସେଥିରେ କେହି ତୁଣ୍ଡ ନ ଫିଟାଇଲେ ଗଲା ।

ତଥାପି ନିୟମ ଅନୁସାରେ ସମିତିର ସବୁ ସଭ୍ୟଙ୍କୁ ଏହି ପ୍ରସ୍ତାବ ତଳେ ଦସ୍ତଖତ ଟିପଚିହ୍ନ ଦେବାକୁ ହେଲା । ସେ ବିଷୟରେ ମଧ୍ୟ ସେମାନେ ଆପତ୍ତି କଲେ ନାହିଁ । କାରଣ ସମିତିରେ ନାଁ ଲେଖାଇବା ଦିନୁଁ କେତେ କାହାର ଦସ୍ତଖତ, ଟିପଚିହ୍ନ ସେମାନେ ଦେଇ ସାରିଲେଣି । ଏବେ ତ ସେ ସବୁର ମୂଲ୍ୟ ମାଟି ଗୋଡ଼ି ପରି ହୋଇ ପଡ଼ିଛି ।

ଲେଉଟିବା ବାଟରେ ବରଜୁ ପଛରୁ ଶୁଣିଲା, "ନମସ୍କାର ପଧାନେ !" ସେ 'ଦଣ୍ଡବତ', 'ଓଳାକ' ଶୁଣିଛି । 'ନମସ୍କାର'ଟା ତାକୁ ନୂଆ ଶୁଣାଗଲା ।

ଚାହିଁ ଦେଖିଲା, ଜୟକୃଷ୍ଣ ବାବୁ ହସି ହସି ଆସୁଛନ୍ତି । "ଏଣିକି କୁଆଡ଼େ ବାହାରି ଆସିଥିଲେ ?"—ଜୟବାବୁ ପଚାରିଲେ । ବରଜୁଠାରୁ ସବୁ କଥା ଶୁଣି ସାରି ପୁଣି କହିଲେ, "ଆପଣ ଟିକିଏ ରାଗିଗଲେ ପରା ? ତେବେ ଏହି ସମବାୟ ଋଣଗଟା ହେଲା ଅଧା ସରକାରୀ । ବେଙ୍କ ବାବୁମାନେ କେହି ସରକାରୀ କର୍ମଚାରୀ ନୁହନ୍ତି । ପୁଣି ଯେଉଁ ଟଙ୍କାଟା ବାଦନ ଲଗୁଅଛି ତାହା ବି ସରକାରୀ ନୁହେଁ । ଆମରି ଦେଶ ଲୋକଙ୍କର ଟଙ୍କା । ଆମ ଟଙ୍କା ଆମରି ଲୋକେ ଯେବେ ଭଲରୂପେ କାରବାର କରି ନ ପାରିବେ ତେବେ ଆଉ ଦୋଷିବା କାହାକୁ ?"

"ତାହା ବୋଲି ଆମରି ଲୋକଙ୍କ ଉପରେ ଏଭଳି ବ୍ୟବହାର କରିବା କଣ ଠିକ୍ ?"—ବରଜୁ ପଚାରିଲା ।

"କଦାପି ନୁହେଁ । ତେବେ ତ୍ରିଲୋଚନ ବାବୁଙ୍କୁ ଆପଣ ବୋଧେ ଜାଣନ୍ତିନ । ମୁଁ ତାଙ୍କୁ ପଢ଼ିଲା ଦିନୁଁ ଜାଣେ । ଏକାସାଙ୍ଗରେ

ବୋର୍ଡ଼ିଂରେ ଥିଲୁଁ । ମୋର ଗୋଟାଏ କ୍ଲାସ ଉପରେ ସେ ପଢ଼ୁଥିଲେ । ଖୁବ୍ ସ୍ୱଦେଶଭକ୍ତ । ୧୯୨୦ ମସିହାରେ ମହାତ୍ମାଜୀ ଆସି ଯେତେବେଳେ ଛାତ୍ରମାନଙ୍କୁ ଡାକଦେଲେ ଯେ, ସେ ବର୍ଷ ଯେ ପରୀକ୍ଷା ଦେବେ ତାଙ୍କ କପାଳରେ ୧୯୨୦ ମସିହା ଲେଖା ହୋଇ ରହିବ, ସେତେବେଳେ ଆମେ କେତେ ଜଣ ପରୀକ୍ଷା ନ ଦେଇ ବାହାରି ଆସିଲୁଁ । ତ୍ରିଲୋଚନ ବାବୁଙ୍କ ଅବସ୍ଥା ଭଲ ନ ଥିଲା । ସେ ପରୀକ୍ଷା ଦେଇ ପାଶ୍ କଲେ । ତା'ପରେ ବେଙ୍କ୍ ମେନେଜର ହୋଇଛନ୍ତି । ଆପଣ ଯାହା କହୁଛନ୍ତି, ତାଙ୍କଠାରୁ ବି ସେଇ କଥା ଥରେ ଶୁଣିଥିଲି । ସେ ଦୁଃଖ କରି କହୁଥିଲେ, ଶହ ଶହ ବର୍ଷ ଧରି ଆମ ଲୋକଙ୍କର ଏମିତି ଅଭ୍ୟାସ ହୋଇ ଯାଇଛି ଯେ, ପଇସାଟିଏ ଧାର ନେଲେ ଭଲରେ ସେତକ ଫେରେଇ ଦେବେ ନାହିଁ ।"

ବରଜୁ କହିଲା, "ସେ କଥା ସତ ଯେ ବାବୁ, ଭଲରେ କିଏ କରଜ କରେ କି ? ପୁଣି ଭଲରେ ଥିଲେ କଣ ଲୋକ କରଜ ନ ଶୁଝି ଦଣ୍ଡ ଫଜତି ସହେ ? ସବୁ ପିନା ଅଭାବରୁ, ବାବୁ !"

"ତା' ନୁହେଁ କଣ । ମାତ୍ର ତ୍ରିଲୋଚନ ବାବୁ ମନ୍ଦ ଲୋକ ନୁହନ୍ତି ।"

"ମୁଁ କଣ ତାଙ୍କୁ ମନ୍ଦ ବୋଲି କହୁଚି କି ? ପୁଣି ତ ଅର୍ଜୁନ ବାବୁଙ୍କ ବାପା ଦୟାନିଧି ବାବୁ ଆସି ଏ ଗାଁରେ ସମିତି ଗଢ଼ି ଯାଇଛନ୍ତି । ସେ କଣ ମନ୍ଦ ଲୋକ ? ଯେତେ ଯାହା ହେଲେ ଲୋକଗୁଡ଼ାଙ୍କୁ ଘଣ୍ଟା ଘଣ୍ଟା ଉଦୁଉଦିଆ ଖରାରେ ଛିଡ଼ା କରେଇ ରଖିବାଟାକୁ ମତେ କାହିଁକି ଜମାରୁ ଭଲ ଲାଗୁନି । ଏଥିପାଇଁ ଆମେ ଯେ ସମସ୍ତେ ଦୋଷୀ, ସେକଥା ମୁଁ କଣ ବୁଝୁନି କି ।

ତେବେ ପାଠପଢ଼ୁଆ ଆଉ ମୂର୍ଖଙ୍କ ଭିତରେ ତ ଫରକ ରହିବା ଲୋଡ଼ା ।” ରାଗ ଆଉ ଘୃଣାରେ ତା’ର ଆଖି ଦୁଇଟା ଜଳି ଉଠିଲା ।

ଜୟକୃଷ୍ଣ କହିଲେ, “ଆହୁରି ଗୋଟାଏ କଥା ମଧ୍ୟ ଆମକୁ ବିଚାରିବାକୁ ହେବ, ବୁଝିଲ ପଧାନେ ? ବାଲେଶ୍ୱର ବେଙ୍କ୍‌ରେ ମୋର ଜଣେ ପିଉସୀପୁଅ ଭାଇ କାମ କରନ୍ତି । ଭଲ ଆଦାୟ ଅସୁଲ କରୁଥିବାରୁ ତାଙ୍କର ଅନ୍ୟ କର୍ମଚାରୀଙ୍କଠାରୁ ବେଶି ସୁନାମ ଅଛି । ସେଥିପାଇଁ ତାଙ୍କ ଦରମା ବି ବଢ଼େଇ ଦିଆଯାଇଛି । ସେ କହନ୍ତି, ଆଦାୟ ବେଳେ ଆଖିବୁଜା ମାଡ଼ ଚଳେଇବା ଦରକାର । ମାଡ଼ ବେଉସା, ମାଡ଼ ନ ଖାଇଲେ ମଲା ମଉସା । ମାଡ଼ ନ ଦେଲେ କି କାହାରି ପାଖରୁ ପଇସା ବାହାରେ ?”

ଚମକି ପଡ଼ି ବରଜୁ ପଚାରିଲା, “କିଏ କହୁଛନ୍ତି ବାବୁ ?”

“ମୁଁ କହୁ ନାହିଁ, ପଧାନେ ! ଏହା ମୋର ପିଉସୀପୁଅ ଭାଇଙ୍କ କଥା । ସରକାର ଯେଉଁ ତଗାବି ଋଣ ମଞ୍ଜୁର କରନ୍ତି, ତାହା ଆଦାୟ କଲାବେଳେ କୁଆଡ଼େ ସୈନ୍ୟ ପଲଟଣଙ୍କୁ ବନ୍ଧୁକ କାନ୍ଧରେ ପକେଇ ଆସିବାକୁ ହୁଏ ।”

“ବେଙ୍କ ପରା ସରକାରୀ ନୁହଁ, ଆମ ଦେଶୀ ଲୋକଙ୍କ କାରବାର ?”

ଜୟକୃଷ୍ଣ କହିଲେ, “ମୋର ସେଇ ପିଉସୀପୁଅ ଭାଇଙ୍କୁ ଠିକ୍ ଏଇ କଥା ମୁଁ ଚେତେଇ ଦେଇଥିଲି । ସେ ଜବାବ୍ ଦେଲେ, ଟଙ୍କା ଅସୁଲ ପାଇଁ ଯେଉଁ ମାଡ଼ ଫଜତି ଦିଆଯାଏ, ସେ ଖାଲି ଲୋକଙ୍କ ଉପକାର ସକାଶ । ଡାକ୍ତର ଯେମିତି ରୋଗୀର ଉପକାର

ପାଇଁ ତାଙ୍କୁ କଲବଲ କରି ଯା ବଥ କାଟନ୍ତି । ତାହା ନ ହେଲେ ତ କରଜ ସୁଧରେ ବୁଡ଼ି ଲୋକଙ୍କର ଘରବାଡ଼ି ନିଲାମ ଯା'ନ୍ତା । ଦଣ୍ଡକେ ସବୁ ଦାଣ୍ଡରେ ଭିକାରୀ ହୁଅନ୍ତେ ।”

“ଉପକାର ପାଇଁ ? ତେବେ ତ ଯେତେ ଲୋକ ବଳକା ପଇସା ସଞ୍ଚି ବେଉପାରେ ଖଟାଉଛନ୍ତି, ସମସ୍ତେ ଆମର ଉପକାରୀ ! ବିଦେଶୀ ଲୋକେ ଆସି ଆମ ଉପକାର ପାଇଁ ଆମକୁ ଶାସନ କରୁଥିବାର ଯେ ଠୋକାଏ କହନ୍ତି, ସେଥିରେ ଆଉ ଗଲାଣି ରହିଲା କେଉଁଠି ? ଯେତେ କାବୁଲି ଟଙ୍କାକେ ଟଙ୍କାଏ ସୁଧ ଭିଡ଼ି କରଜ ଲଗାନ୍ତି, ପୁଣି ଆଦାୟ ବେଳେ ଠେଙ୍ଗା ଧରି ଦାଣ୍ଡ ଦୁଆରେ ଜଗି ବସନ୍ତି ଯେ ଆଉ ଉଠନ୍ତି ନାହିଁ, ସେମାନେ ତେବେ ଆମ ଉପକାର କରୁ ନାହାନ୍ତି କ ?”

ଜୟକୃଷ୍ଣଙ୍କ ଯୁକ୍ତି ଶୁଣି ଆଜି କେତେ ବର୍ଷ ପରେ ବରଜୁର ବାପ ଶାମ ପଧାନ ତାହାର ମନେ ପଡ଼ିଗଲା । ମନେ ପଡ଼ିଗଲା, ନିଜ ଘରଭିତର ମାଟିପିଣ୍ଡା ତଳେ ଛୁଡ଼ା ହେଇ ଅମିନ ଗୃକରି ଛୁଡ଼ିବ ନାହିଁ ବୋଲି ବାପ ସାଥିରେ ସେ ଯେଉଁ ତର୍କ କରୁଥିଲା, ଆଜି ଜୟକୃଷ୍ଣ ତା' ପାଖରେ ସେହିଭଳି ତର୍କ କରୁଛନ୍ତି । ସେହିଦିନ ପରି ଆଜି ବି ତାହାର ଆଖିଯୋଡ଼ାକ ବାମ୍ପରେ ପୂରି ଟଳଟଳ ହେଲା, ଓଠ ଦୁଇଟା ଥରି ଉଠିଲା ।

“ଆପଣ କହନ୍ତି, ଏସବୁ ଆମର ଉପକାରୀ ? କିଏ ତେବେ ଆମ ଉପକାରୀ ନୁହ, କହନ୍ତୁ ବାବୁ ? ପୁଲିସ, ଅମଲା, ଓକିଲ, ହାକିମ, ପୁଣି ସବୁରି ଉପରେ ଇଂରାଜୀ ସରକାର, କିଏ ନୁହଁ ? କାହିଁକି ତେବେ ଆପଣ ପଢ଼ା ଛାଡ଼ିଲେ ? କାହିଁକି ଏ ମୋଟା ଖଦି ପିନ୍ଧି ଗାଁ ଗାଁ ଘର ଘର ବୁଲୁଛନ୍ତି ? ଖାଲି କଣ ଏଇ

ଉପକାରୀଙ୍କୁ ସବୁରି ଆଗରେ ଶତ୍ରୁ ପରିଚୟ କରେଇ ଦବାକୁ ? ମୁଁ ବି ଦିନେ ବନ୍ଦୋବସ୍ତ ଅମିନ ହୋଇ ଉପକାର କରୁଥିଲି କେତେ ଲୋକଙ୍କର । ଏମାନେ ଆଜ ଅଧିକା କଣ କରୁଛନ୍ତି କହନ୍ତୁ ଦେଖି ? କହନ୍ତୁ, ତୁମ୍ଭେ ହେଲେ କାହିଁକି ?"

କଣ କହିବାକୁ ଯାଇ ଜୟକୃଷ୍ଣ ଆଉ କହି ପାରିଲେ ନାହିଁ । ତୁମ୍ଭେ ହେଲେ । ଏହି ଅଶିକ୍ଷିତ ଗାଉଁଲି ଲୋକଟିର ଚେହେରା ଦେଖି ତାଙ୍କ ଆଖି ତଳକୁ ହୋଇଗଲା । ହରିପୁର ଗାଁରେ ବରଜୁ ଯେଉଁ ଉପାୟରେ ଗୋରୁ କାଇଦା କରିଥିଲା, ଜୟକୃଷ୍ଣ ତାହା ଶୁଣିଛନ୍ତି । ଆଜ ତାହାର ଚେହେରା ଦେଖି ତାଙ୍କୁ ବୋଧ ହେଲା, ଖାଲି ଗୋରୁ କାହିଁକି, ମଣିଷ କାଇଦା କରିବା ମଧ୍ୟ ଲୋକଟା ପକ୍ଷରେ ଆଦୌ କଠିଣ ନୁହେଁ ।

ହାଣ୍ଡି, ପାଚ୍ଛିଆ, ଢଉ, କୁଞ୍ଜା ଯେତେ ଯେଉଁଠି ଥିଲା ସବୁ କାଢ଼ି ଆଣି ତାହା ଭିତରେ ହାଗିବୋଉ ଠାଆ ଠାଆ କରି ହାଟ ସଉଦାଗଳ ସଜାଡ଼ି ରଖିଲା । ତହିଁ ଆରଦିନ ସ୍ୱର ପାଞ୍ଚ ଜଣ ସାଇ-ପଡ଼ଶା ଝିଅ ମାଇପେ ଆସି ଯୁଟିଗଲେ । କିଏ ବସିଲା ମନ୍ଦଲା କୁଟି, କିଏ ବରି ରଗଡ଼ି, କିଏ ହଳଦୀ ବାଟି, ଆଉ କିଏ ମୁଗ ପାଛୁଡ଼ି । କାଚ ଖଡ଼ୁର ଝଣଝଣ ଖଡ଼ଖଡ଼ ଶବ୍ଦ ମିଶି ଘରଯାକ ଚହଳ ପଡ଼ିଥିଲା । ହାଗିବୋଉ ନିଜେ ଗୋଟାଏ ହାଣ୍ଡି ଭିତରେ ମେଞ୍ଚାଏ ବଟା ବରି ଧରି ଫେଣେଇ ବସିଲା । ବରଣୀ ଗାଁର ହେଲେ କଣ ହେବ, ହାଗିବୋଉ ଯେମିତି ମେଳାପରି ମଣିଷ, ସେମିତି ବଡ଼ ସହଳ ସଭିଙ୍କି ଆପଣାର କରିପକାଏ । ହରିପୁରକୁ କେତୋଟା ଦିନ ହେଲା ଆସି ସେ କାହାକୁ ଅପା, କାହାକୁ ମାଉସୀ, କାହାକୁ ବଉଳ କରି ସାରିଲାଣି ।

ବାଁ ହାତରେ ହାଣ୍ଡି ଫନ୍ଦାକୁ ଧରି ହାଗିବୋଉ ଡାହାଣ ହାତରେ ବରି ଫେଣେଇବାରେ ଲାଗିଥାଏ । ସେଥି ସଙ୍ଗେ ତାହାର କଥାଗୁଡ଼ିକ ଫେଣେଇଲା ପରି ଫୁଲି ଉଠୁଥାଏ—"କାହାକୁ କହିବି ଲୋ ଅପା, କାହାର ସିନା ବଡ଼ଜାଇ ଅନୁକୂଳ ପନ୍ଦର ଦିନ ଆଗରୁ ହୁଏ, ଆମର କାଲି ବାହା, ଆଜି ବଡ଼ଜାଇ ଅନୁକୂଳ ।"

ଦୁଖୀଅପା ହସିପକେଇ କହିଲା, "ହେଲା ଏବେ । ଦୋଷ ବାହାପାଇଁ କିଏ ଏତେ ଖୁଣ୍ଟୁଛି ମ ।" ଦୁଖୀଅପା ଗୋଟାଏ ଗୋଡ଼ ଚକିପାଖରେ ଜାକି ଆଉ ଗୋଟାଏ ଗୋଡ଼ ଲମ୍ବେଇ ଦେଇଥାଏ । ଚକିସାମନା ଧରି ଝୁଲିଝୁଲି ବରି ରଗଡ଼ିବାରେ ଲାଗିଥାଏ । ଚକି ଭିତରୁ ବରିଫାଳ ଖସିଲାଭଳି ତାହାର ଦାନ୍ତ ମଝିରୁ କଥାଗୁଡ଼ା ବାହାରି ଆସୁଥାଏ । ଦାନ୍ତ ଚିପି କଥା କହିବା ତାହାର ଅଭ୍ୟାସ ।

"ମଲ୍ଲ ଘୋଡ଼ାର ବାଙ୍ଗ ଟାଙ୍କ ମଣା ହଉଛି । ଗୌର ପୁଅକୁ ତମେ ପୁଣି ହାତକୁ ହ'ହାତ କରି ପାରିଲ, ସେ କଥା କହ । ଆହା, ସୁନା ଘରଟା ଦଣ୍ଡକେ ଚୂନା ହୋଇଗଲା ଲୋ । ସେଇଦିନୁ ଏଣିକି ଆସିବାକୁ ଆଉ ତ ଗୋଡ଼ ଚଳେ ନାହିଁ । ବାରିପଟ ଗାଡ଼ିଆକୁ ଗାଧୋଇ ଆଇଲେ ତ ମୋତେ ଚଞ୍ଚଳୀବୋଉ ମୁହଁ ହଣିଯାଏ ।"

ହଳଦୀବଣ୍ଟା ବନ୍ଦ କରି ମାଳ ମାଉସୀ କହିଲା, "ଚଞ୍ଚଳୀବୋଉ କଥା କାହିଁକି ଚଡ଼ିଛୁ ଭଲା ! ସେମିତି ମଣିଷଟାଏ ତମେ ଏ ଖଣ୍ଡ ମଣ୍ଡଳରେ ଦେଖିବାକୁ ପାଇବ କି ! ତା' ବାପ ମା ସେମିତି ନାଁ ଦେଇଥିଲେ ହାରି, ସେ ବି ସେମିତି ମଣିଷପାକରେ ହାରି । ତିନି ତିନିଟା ପିଲାର ମା ହୋଇ ଦାଣ୍ଡଦୁଆର କେମିତି ଦେଖି ନ ଥିଲା ।"

ଦୁଖୀଅପାର ଆଖିପତା ଯୋଡ଼ିକ ଓଦା ହୋଇଗଲା । କାନିରେ ଆଖି ପୋଛି ସେ କହିଲା, "ହିନେ ଯେବେ ଘରେ କଣ ଆଉଟି ଥିବ, ଗାଧୋଇ ଆସୁ ଆସୁ ଉଜୁର ହୋଇଗଲା, ତେବେ ଦାନ୍ତକାଠିଟା କାମୁଡ଼ି ପୋଖରୀକୂଳେ ରହିଁ ରହିଥିବ । ରାଗିମାଗି କହିବ, ହିନ ହ'ପହରଯାକେ ତମର କଣ ଆଉଟା ସରୁ ନ ଥିଲା ମ । କାହିଁକି, ତମ ଜଳକଳା ଘଇତା କଣ ଧାନ ଉଷାନ୍ତା ନାହିଁ ?"

ଗଉରି-ଘରଯା-କଥା କହୁ କହୁ ଦୁଖୀଅପା ନିଜ କଥା କହି କାନ୍ଦ ପକାଏ । ଟିକିକେ ତା ଆଖିରୁ ଲୁହ ଗଳିପଡ଼େ । ସେଥିପାଇଁ ତାକୁ ପଡ଼ିଶା ଲୋକେ କହନ୍ତି କାନ୍ଦୁରୀ ଅପା । ସ୍ୱାମୀ ଚାଲିଗଲା ଦିନୁ ସଂସାରେ ତାର ମା ଭାଇ ବନ୍ଧୁ କୁଟୁମ୍ବ କେହି ନାହାନ୍ତି । ଗାଁ ମଝିରେ ଜଣେ ମଣିଷକୁ ଥାନ ହେଲାଭଳି ଖଣ୍ଡେ ଘାନ କୁଡ଼ିଆ । ଧାନ କୁଟି, ମୁଗ ଭଗଡ଼ି ସେ ପେଟ ପୋଷେ । ସକାଳ ସଞ୍ଜରେ କାହାକୁ କେତେ ବାହୁନି କାନ୍ଦେ । ନିଜ ସ୍ୱାମୀ ସିନା ଦୁଖୀଅପା ଯେଉଁ ସମୟରେ ହରିପୁର ଗାଁକୁ ଆସିଲା, ଲୋକେ ତା ବୟସରେ କେତେ କଣ

ଟୁପ୍‌ଟାପ୍ ହେଲେ । କିଏ କହିଲ, ଦୁଖୀଅପାର ସେ ନିଜ ସ୍ୱାମୀ ନୁହେଁ । ତହେଁ ତାହଙ୍କି ଆଦର୍‌ଆଦର ହୋଇ ରହିଛନ୍ତି ।

ସ୍ୱାମୀ ଥିଲ୍‌ବେଳେ ଯୋଡ଼ିକ ପ୍ରାଣୀ ବେଶ୍ ଖୁସିରେ ଚଳୁ-ଥିଲେ । ନନ୍ଦ ସ୍ୱାଇଁ ଲୋକଟା ମାଟିତଡ଼ା, ପାଣିବୁହାକୁ ଯିନା ସେତେ ପାରେ ନାହିଁ, ତେବେ ତାର ଘର ଭଲ ଗୁଣଟାଏ ଥିଲ । ଗୋରୁ ଚିହ୍ନିବାରେ ସେ ବିଚକ୍ଷଣ । ଯେମିତି ସେମିତି ଗୋରୁଟା ହେଉ, ଗୋଟାଏ ଥର ଖାଲି ତା' ଉପରେ ଆଖି ବୁଲେଇ ଆଣିଲେ ସେ କହିଦବ ବଳଦଟା ମଠୁଆ କି ରଗଦାର, ତାର କେଉଁ ଖୁରଟା ବୁଲୁଛି, ଖାଇବା ବିଷୟରେ କେମିତି, କାନ୍ଧ କି ଭଳି, ଦାନ୍ତଛି କେତୁଟା । ବଳଦ କିଣି ବାହାରିଲେ ନନ୍ଦ ସ୍ୱାଇଁକୁ କେହି ନ ଡାକି ନାହିଁ । ଏହି ବଳଦଖୋଜାରେ ସେ କାହିଁ କାହିଁ ମୁଲକ ବୁଲି ଆସିଥିଲ—ସାଇଲେ, ସାଇବର, କନକା, କୁଜଙ୍ଗ, ଆଠଗଡ଼, ତିଗିରିଆ । ଏହା ଛଡ଼ା ସେ ଯେଉଁ ଘିଅ-ମନ୍ତ୍ର ଜାଣିଥିଲ, ସେଥିରେ କେତେ ଘା, ବଥ, ପଠା, କଣନଖା ରୋଗ ଭଲ କରି ଦେଉଥିଲ । ଦିନେ ହଠାତ୍ କାହିଁକି କେଜାଣି ସେ ଘରୁ ବାହାରିଗଲ ଯେ, ଆଉ ଫେରିଲ ନାହିଁ । କିଏ କେତେ କଥା କହିଲେ । ଦୁଖୀକୁ ପଚାରିଲେ ସେ ନନ୍ଦକୁ ପରସ୍ତେ ଶୋଧି ପକାଏ । ତାହାପରେ ଟୁଙ୍ଗି ଭିତରେ ପଶି ଘଡ଼ିଏ ବାହୁନି କାନ୍ଦେ । ସେ କି ଛାତିଫଟା କାନ୍ଦ ! ଚାଲିଗଲ ବାଟୋଇର ମଧ୍ୟ ଆଖିରୁ ପାଣି ବୋହିପଡ଼େ । ଯେମିତି ଅବା ପୃଥି ଗୋଟାକର ବାହୁନା ଦୁଖୀ ମୁହଁରୁ ବାହାରି ଆକାଶଯାକ ଖେଳେଇ ହୋଇ ପଡ଼ୁଛି । ଯେତେବେଳେ କାମ ପାଇଟିରୁ ଟିକିଏ ତାକୁ ତର ମିଳେ, କୁଡ଼ିଆ ଭିତରୁ କବାଟ କିଳି ସେ ବାହୁନି ବସେ । ତାତଲା ନିଶ୍ୱାସରେ ଆଖିର ଲୁହ ଶୁଖିଯାଏ । ନିଆଁ ନ ଦିଶି ଧୂଆଁ କୁହୁଳି ଉଠିଲ୍ ପରି ବାହୁନା ତାହାର ବାହାରେ । ଦୁଖୀର ବାହୁନା ଶୁଣିବା ସାହିଲୋକଙ୍କର ଏମିତି ଅଭ୍ୟାସରେ ପଡ଼ିଯାଇଥିଲ ଯେ, କଣ ତାର

ଦୁଃଖ ତାହା ଆଉ କେହ୍ନ ବୁଝନ୍ତି ନାହିଁ । ସେ ନିଜେ ହିଁ ଚେଙ୍ଗନା ଖାଇବା, ଗାଧୋଇବା ଭଳି କାହବା ଠାକୁ ଗୋଟାଏ ଅଭ୍ୟାସ କରି ପକାଇଥାଏ । କାହିଁସାରି ମଦନ ଦାସଙ୍କ ଘରକୁ ସେ ଧାନ କୁଟିବାକୁ ଯାଏ । ନ ହେଲେ ଚଇତନ ପାଇକରାଙ୍କ ନୂଆ ପୁଅକୁ ଗୋଡ଼ରେ ଶୁଆଇ ହଳଦୀ ଲଗେଇ ବସେ ।

ମାଳ ମାଉସୀ କହେ, "ଗଉରୀ ଆଉ ଜଣକୁ ଆଣି ଘର କରିବ, ଏ କଥା ତ ପରତେ ହଉ ନ ଥିଲା ଲୋ ଅପା ! ଗଉରୀ ଆଗରେ ହାରି ପୁଣି କୁଟା ଖଣ୍ଡିକ ହଖଣ୍ଡ କରିବ ! କଣ କହିବି ସେ କଥା । ଚେମଣିଟା ମୋର ପିଲା ହୋଇଥାଏ । ହାତ ଫଟେଇବ ବୋଲି ଜଗର କଲାରୁ ଗଉରୀ ବାଡ଼ିକି ଗଲା ହରଗଉରୀ ଫୁଲପୁଞ୍ଜାଏ ଆଣିବାକୁ । ଗଉରୀର ପାଟି ଶୁଣି ତାଙ୍କ ବାଟ ଘର କଣରେ ଠିଆ ହୋଇଗଲି । ଏମିତ ରାଗ ଦିନେ ହେଲେ ମୁଁ ତାର ଦେଖି ନାହିଁ । ଘର ଗୋଟାକର ମାଇପେ ଜମା ହୋଇ ପଡ଼ିଛନ୍ତି । ଗଉରୀ ଖାଲି ପାଟି କରୁଛି, 'ସାଙ୍ଗେ ସାଙ୍ଗେ ଘରୁ ନିକାଲି ଦେବି । ପାଜି ବଦମାସ !' ତେବେ କଣ ! ବୁଝ୍‌ ବୁଝ୍‌ କଣ ନା ହୀରା ଦେହରେ କୁଆଡ଼େ ଦିନକ ଆଗରୁ ତବକ ହୋଇଥିଲା । ସେ ଗଉରୀ ବୋଲି ନ ମାନି ବାଡ଼ ଗାଡ଼ିଆରେ ଗାଧୋଇ ପଡ଼ି ଗରାଏ ପାଣି କାଖେଇ ଘରକୁ ଆସୁଥାଏ । ଦଇବେ ଗଉରୀ ଆଗରେ ହାବୁଡ଼ି ଗଲା । ଲାଜରେ ଓଢ଼ଣା ଟାଣି ମତେ ଆସି ହସି ହସି କହିଲା । ତାଙ୍କ କଥା କଣ ଶୁଣୁଚ, ମାଉସି ! ସବୁଦିନେ ତ ସେମିତ ଅବୁଝାମଣା । ଆଜି କଣ ନୂଆ ହେଲାକି ?"

ହାଣ୍ଡି ଫନ୍ଦରେ ହାତରୁ ବଗଫେଣ ପୋଛୁ ପୋଛୁ ହାରବୋଉ କହିଲା, "ହୀରା ବାହାଘରକୁ ତାକୁ ମୁଁ ଲୋଡ଼ିଥେଲି ଯେ, ଆଗ ଆଗ କରି ବଡ଼ ଜା ହିସାବ କରି ତୁ ମାଇଲା । ବହୁତ ଜଗର କଲାରୁ ଯାଇ ତା' ମୁହଁରୁ କଥା ପଦେ ଶୁଣିଲି । ବାହାଘର

ଚହଳରେ ତ ମୋର ସବୁ କଥା ପାଟସୋର ହେଇ ଯାଉଥାଏ । କଣ ଖାଇଲି ପିଇଲି କିଛି ହେଲେ ବୁଝି ପାରିଲି ନାହିଁ । ଲୁଗା ଖଣ୍ଡେ ହେଲେ କି ଭଲ କରି ପିନ୍ଧେଇ ପାରିଲି ! ତାଙ୍କୁ ତ ଯେତେ କରି କହିଲି ଖଣ୍ଡେ ଭଲ ଶାଢ଼ୀ ଆଣିବାକୁ, ନ ହେଲା । ମୁଁ ମାଇପି ଲୋକ ଆଉ କଣ ଦାଣ୍ଡକୁ ବାହାରି ଲୁଗା କଣିବି ? ମନ ସଉଁ ଗୋଳେଇ ଘାଣ୍ଟି ହେଲି ! ମାସ ଯୋଡ଼ାଏ ତ ଯାଇ ନାହିଁ, ମଲି ଖବର ପହଞ୍ଚିଲା ।"

ପଦ୍ମଅ ମାମୁଁର ଘରିଯା ବେଙ୍କାଏ ନଡ଼ଆ ଖଡ଼ିକା ଧରି ମୁଗ ଭଜୁଥିଲା । ସେ କହିଲା, "କାଲି ହାଟରୁ ପରି କଣ ଲୁଗା ପଟା ସବୁ କଣା ହେଇଚି ?"

ହାଣ୍ଡିବୋଉ କହିଲା, "ହଁ, ତମରି ଗେରସ୍ତ ଯାଇଥିଲେ ସାଙ୍ଗରେ । ମୁଁ ପରି ଯୁଆଙ୍କ ଢଙ୍ଗ ଜାଣେ । ସେଥିପାଇଁ ସିନା ତମ ଗେରସ୍ତଙ୍କୁ କୁହାପୋଛା କରି ପଠେଇଲି । ସବୁ ଲୁଗାପଟା ଆଣୁଛି, ଦେଖିବ ତମେ । ବୋହୂ ପାଇଁ ଯଉଁ ଶାଢ଼ୀଖଣ୍ଡ ଆସିଛି, ତାକୁ ଟିକିଏ ବଦଳେଇବାକୁ କହିଲାରୁ ମୋ ଉପରେ ବରୁଡ଼ି ମାଇଲା ପରି ହେଲେ । କାହିଁକି, ତମ ଗେରସ୍ତଙ୍କୁ ପଚାରିବ ।"

ପଦ୍ମଆର ଘରିଯା ମୁହଁ ମୋଡ଼ିଦେଲା, "ହଁ, ସେ ନିଜେ ସଉଁ ପସନ୍ଦ କରିବା ମଣିଷଟାଏ ! ତାକୁ ଲଜ ନ ଥେଲା । ତାକୁ ଡାକ ପଠଉଥିଲି !"

"କାହିଁକି, ପଦ ପଦ କରି ଯାହା ବଚେଇ ଥିଲା ସବୁ ଜିନିଷ ସେ ତ ଦେଖି ରୁହିଁ କଣିଚନ୍ତି । ଜଣକୁ ଦ'ଜଣ ହେଲେ ଗୋଟାଏ ପସନ୍ଦ ଅଛି ତ ! ଏ ପରି ଯଉଁ ଦୋକାନକୁ ଯିବେ ସେଠୁ କେମିତି ପଳେଇ ନ ଆସିବା ଯାକେ ବାଟ ଦଶିବ ନାହିଁ ।

ତରତର ହେଲେ କଣ ଭଲ ସଉଦା କଣା ହୁଏ ? ପୁଣି ସବୁ କଥାରେ ଖାଲି ଚଢ଼ମିଢ଼ । ସେଥିରେ ତମର ଅବା କଉଁ କାମରେ ମନ ଲାଗିବ ? ହଁ, ଲୁଗା ଦେଖିବ ପରା, ଆଣେ ଯାଇ"—କହି ହାରବୋଉ ବିରି ହାଣ୍ଡିଟାକୁ ପାଣି ହାଣ୍ଡିରେ ଢଳକ୍‌ଣ କରି ଥୋଇଲା । ଉଠ୍ ଉଠ୍ ହେଉଛି, ଦୂରରୁ କାନ ପତେଇ ଶୁଣିଲା, ବଳଦ ବେକରେ ଘଣ୍ଟି ଦାଣ୍ଡ କମ୍ପେଇ ଝଣର ଝଣର ବାଜି ଉଠିଲା ।

"ହାର ତ ଆସିଲାଣି ପରା । ତାହାର ଘର ବଳଦଘଣ୍ଟି ପରି ଶୁଭୁଚି"—କହି ହାରବୋଉ ଦାଣ୍ଡ ପଟକୁ ବାହାରିବାର ଦେଖି ଆଉ ମାଇପେ ଯେଝା କାମ ଛାଡ଼ି ତାର ପଛରେ ଚାଲିଲେ । ଦାଣ୍ଡ ପାହାଚ ଓହ୍ଲେଇ ହାରବୋଉ ଆଗ ଗାଡ଼ି ଭିତରକୁ ହାତ ବଢ଼େଇ କଅଁଳା ପୁଅଟିକୁ ହାର କୋଳରୁ ନିଜ କୋଳକୁ ଆଣିଲା । ପିଲାଟି ବେଶ୍ କାବୁଲ ବାବୁଲ ହେଉଛି । ମା କୋଳ ଛାଡ଼ି ସେ କାନ୍ଦି ଉଠିଲା । ମାଲ ମାଉସୀ କହିଲା, "ତତେ ବାହା ହଉ ବୋଲି ତ କାନ୍ଦିଲାଣି ଲୋ ହାରବୋଉ ।" ହସି ହସି ହାରବୋଉ ନାତି ମୁହଁରେ ଗୋଟିଏ ଚୁମ୍ବ ଦେଇ କହିଲା, "ମତେ କାହିଁକି ବାହା-ହବ, ତତେ ହଉନ ।" ଶଗଡ଼ ଭିତରୁ ମାଲ ମାଉସୀ ହାରର ଗୋଟିଏ ହାତ ଧରି ତାକୁ ପଦାକୁ କାଢ଼ିଲା । ଘର ଭିତରେ ପଶି ହାର ମାନ୍ୟଲୋକଙ୍କୁ ଓଳଗି ହେଲା । ଯେତେ ହେଲେ ବଡ଼ ଘରର ବୋହୂ ସେ । ଗୋଡ଼ଠାରୁ ମୁଣ୍ଡ ଯାଏ ରୁପା ଅଳଙ୍କାର ଖୁନ୍ଦି ହେଉଛି । ରସ କ ପିତ୍ତଳ କନଓ ଖଣ୍ଡେ ହେଲେ ଦେଖିବାକୁ ନାହିଁ । କେତେ ମାଇପେ ହାରକୁ ବେଢ଼ିଯାଇ ତାହାର ଶାଶୁ ଶଶୁର, ଜା ନଣନ୍ଦଙ୍କ କଥା ପଚ୍ଛରି ବସିଲେ । ସବୁ କଥାରେ ଉତ୍ତର ଦେବାକୁ ତାକୁ ଲାଜ ମାଡ଼ୁଥାଏ । ଶାଶୁଘରେ ଯାହା ବା ଗାଳି ଗଞ୍ଜଣା, ଅନ୍ନଭୋଗ ସହୁଛି, ସେ କଥା କଣ ପଦାରେ କହନ୍ତି ?

ପୁଣି ହରିପୁର ଗାଁରେ ତା'ର ତ କେହି ପିଲାଦିନ ସାଙ୍ଗସୁଖ ଚିହ୍ନାପରିଚ ନାହିଁ ଯେ ବିଶ୍ୱାସ କଥାଗୁଡ଼ାକ ଫିଟେଇ କହିବ ।

ଦୁଃଖୀଅପା ମୁହଁ ମୋଡ଼ିଦେଇ କହେ, "ଆ, ପିଲା ଝିଅଟା । ତାକୁ କଣ ଏତେ କଥା ପଚାରୁଚ ମ ? କେତୁଟା ଦିନ ସେ ଘର କଲାଣି ସେ । ତା' କହିବାକୁ ଶାଶୁଘରେ ତ ପାଦ ଦେଲା ଦିନରୁ ତାର ଉଜୁଡ଼ିରୁ ଉଜୁଡ଼ି ହଉଚି । ଶାଶୁଘରେ ବୋହୂ ହେଲାରୁ ହାନିଲାଭରେ କିଏ କେତେବେଳେ ପଦେ ଅଧେ କହି ଦଉଥିବ । ଆଲୋ, ସଂସାର ଭିତରେ ଘର କରିଥିଲେ ପଥର ପଇଲେ ସହି ।"

ସୋଦରୀ କହେ, "କାହିଁକି, ମଟି ସାହୁ ନାରଣ ସାହୁ ଘରକୁ ଦେଖୁ ନ । ସେ ବୋହୂଟା ତା'ଘରେ ପାଦ ଦେଇଛି କି ନାହିଁ, ଶାଶୁ ମଲା, ଶଶୁର ମଲା, ଶେଷକୁ ପୁଣି ଘଇତା ମଲା । ବରଷ ପାଞ୍ଚଟା ଯାଇଚି କି ନାହିଁ ତାର ପରି ଘରୁଟା ଏକାବେଳେ ଅଇରି ଖପର ବଇରି ବା ହେଇଗଲା । ମଣିଷ ଲଖଣରେ ସିନା ଘର !"

ସବୁରି ଭିତରୁ ବାହାରି ପଡ଼ି ମୁରବିପଣିଆ ଦେଖେଇ ମାଳ ମାଉସୀ କହିଲା, "ମଲା ମୋର, କାହିଁକି ଏତେ ବିଗୁରି ପଡ଼ଚ କଲେ ! ଝିଅଟା କଉଁ ଫନ୍ଦିରୁ ତା' ଶାଶୁଘରୁ ବାହାରିବଣି । ତୋରାଣି ମୁଦାଏ ବାଡ଼ିବୁଝି ଲୋ ହାରିବୋଉ ।"

ହାରିବୋଉ ସେତେବେଳକୁ ଛାଟିଆଏ ଦୁଧ ଆଣି ନାତିକୁ ଗୋଡ଼ରେ ଶୁଆଇ ପିଆଇ ଲାଗିଥାଏ । କହିଲା, "ମଲା ଲୋ । ଦେଖୁଚୁ ଚନ୍ଦନ ପୋଛୁଚୁ କାଠ । କାହିଁକି, ତୋ' ଗୋଡ଼ କଣ ଚଳୁନି କି ? ହାଣ୍ଡିରେ ତ ତୋରାଣି ଅଛି । ମୂଳାଶାଗ, ବଡ଼ି ସନ୍ତୁଳା ହେଇ ପଲମରେ ଢୋଡ଼ଆ ହେଇଚି । ବାଡ଼ି ଦଉନୁ !"

ମାଳ ଗୌରୀଙ୍କର ଲେଖାଯୋଖା ଗୁଡ଼ାକ । ଗୋଟିଏ ବୋଲି ପୁଅ ସେ ବେ ପୁଣି ବାଇଆ । ଆଉ ସ୍ୱାମୀଟି ବାତେର ମଣିଷ । ଆଠକାଳ ବାରମାସି ଘରଭିତରେ ପଡ଼ିରହି ଖାଲି ସ୍ତ୍ରୀ ଖାଇବାକୁ ଦେ, ତା' ଖାଇବାକୁ ଦେ ବରାଦ କରି ଲାଗିଥିବ । ଟିକିଏ ଅସୁବିଧା ହେଲେ ଗାଳିଦେଇ ଠେଙ୍ଗା ଫୋପାଡ଼ିବ । ସ୍ୱାମୀ ଆଉ ପୁଅ, ଦୁଇଟି ପ୍ରାଣୀ ମାଳ ବେକରେ ବନ୍ଧା । ତାର ଦୁଃଖ ଧନ୍ଦା କରି ଦିହିଙ୍କି ସେ ଆଜିଯାଏଁ ଜୀଆଁଇ ରଖିଛି । ପୁଅଟା ତ କେତେବେଳେ କୁଆଡ଼େ ବୁଲେ । ଖାଇଲେ ଖାଇଲା, ନ ଖାଇଲେ ନାହିଁ । ଗାଁ ଗାଁ ବୁଲି କାହାକୁ କଣ କହେ । କେଉଁଠି ଚାକିଆ, ଆଉ କେଉଁଠି ବିଧା ବିଧୁଡ଼ା ଖାଇ ଘରେ ଆସି ବାପ ମାଙ୍କୁ ମାରିବାକୁ ବାହାରେ । ସେତେବେଳେ ମା ମନ କେତେକେ ହୁଏ ! ପୁଅଠାରୁ ମାଡ଼ ଖାଇ, ସ୍ୱାମୀଠାରୁ ଗାଳି ଖାଇ ତାହା ବଦଳରେ ତାଙ୍କୁ କୁଆଡ଼ୁ କମିତି ମୁଠାଏ ଖାଇବାକୁ ଦେଲେ ମାଳ ମନଟା ଟିକିଏ ଭଲ ରହେ ।

ଘରେ ବା ଅଛି କଣ ଯେ ଯେ ଓଳିଏ ଲୋକଙ୍କୁ ନେଇ ବସାଇ ଖୁଆଉଥିବ । ତେବେ ମାଳର ଗୋଟାଏ ଗୁଣ ପାଇଁ ତାକୁ ଦଶଖଣ୍ଡ ଗାଁରେ ଆଦର । ତା' ହାତରେ କୁଆଡ଼େ କଣ ଗୋଟାଏ ଶିରୀ ଅଛି ଯେ ଯାହା ରାନ୍ଧିଦେବ ସେ ଅମୃତ । ସେଇ ଶାଗଖରଡ଼ା, କଖାରୁ ଅମ୍ବିଳ, ମାଛ ମହୁର, ଆଉ ଯେତେ ଯେ ତେଲ ମସଲା ଦେଇ ରାନ୍ଧୁ, ମାଳର ହାତ ବାଜିଲେ ସେଥିରୁ ନିଆରା ବାସନା ବାହାରିବ । ତେଲ ନାହିଁ, ମସଲ ନାହିଁ, ତା' ରନ୍ଧାରୁ ଯେଉଁ ମହକ ଉଠେ, ଖାଇବା ଲୋକ ତକ୍ଷଣେ ବାରିଦେବ କେଉଁଟା ମାଳର । ଲେଖାଯୋଖା ବନ୍ଧୁବାନ୍ଧବଙ୍କ କଥା ତ ଛାଡ଼, କେତେ ଗାଁରୁ ତା' ପାଖକୁ ଲୋକେ ଆସି ଗୁଆଟିଏ ଦେଇ ନିମନ୍ତ୍ରଣ କରିଯାନ୍ତି । ଶୁଧିଅ

ଶ୍ରାଦ୍ଧ, ବାହା ନମସ୍କେରେ ଡାକପଡେନ ଫୁଡ଼ଲ ବେଳକୁ ପନପଶବା, ପିଠା ଉଖୁଡ଼ାରୁ କଏ ବୋଝେ ଘରେ ଦଏ, ଆଜ କଏ ଶାଢ଼ୀ ଙ୍କ ଗାମୁଛ ଖଣ୍ଡେ, କାହାର ବଲ ନ ଟାଇଲେ କାନରେ ହେଲେ ଝଇ କୋଁ ମୁଠାଏ ବାନ୍ଧଦଏ । ମାଳ କାହାକୁ କଛୁ କହେ ନାହିଁ; ଯେ ଯାହା ଦେଲ ତାର ଖୁସି ।

ଗାଁ ମାଇପେ କୁହାକୁହ ହୁଅନ୍ତ, ମାଳର ପିଲ୍ୱନେ କୁଆଡ଼େ ନରହର ମିଆଁ ର ବାଉ କୂଅରେ ଗୋଟାଏ ଶଢ଼ାବାଘ ଖସି ପଡ଼ଥିଲ । ନରହର ତାକୁ ବାଉଁଶ କେଞ୍ଚାରେ ମାଶ ଗାଁ ଦାଣ୍ଡରେ ଘୋଷାର ସବୁର ଘରୁ ପଇସା ଅସୂଲ କଶଥିଲ । ମାଳ କାହାଠୁଁ ଶୁଣିଥିଲ କେଜାଣି, ସେଇ ମଲ ବାଘ ମୁହଁରେ ହାତ ପୂରାଇ ଦେଇଥିଲ । ମଲେ ବ କଣ ହେଲ, ଯେତେ ହେଲେ ବାଘ ତ । ସାତ ଆଠ ବରଷର ଝିଅଟା ବାଘ ମୁହଁରେ ହାତ ଭର୍ତ୍ତି କରବା କଣ କମ୍ ସାହସର କଥା ! କେତେ ଝିଅ ମାଇପେ ରୁଣ୍ଡ ହୋଇଥିଲେ । ବାଘ ମୁହଁରେ ହାତ ପୂରେଇଲେ ସେ ହାତରେ ଯାହା ରାନ୍ଧଦେବ ତା ସୁଆଦ ନଆର । ଯେତେହେଲେ କାହାର ସ୍ଥିତ ପଡେଇଲ ନାହିଁ, ଏକା ମାଳ ଛଡ଼ା । ସାହସ କଲ ବୋଲ ସିନା ତାର ଫଳ ପାଇଲ । 'ସାହସେ ମର, ସାହସେ ତର, ସାହସେ ଘର ଦୁଆର କର ।' ମାଳର ଗୁଣମାନ ଶୁଣି ହାଗବୋଉ ତାକୁ ଆଗତୁରା ନ୍ଲକ ପଠେଇ ଉଠେଇ ଆଣିଚ । ପିଲେଇଭ ମଣିଷଟା, ସେ କଣ ବନ୍ଧୁବାନ୍ଧବ, ଗଲଅଇଲ ସବୁରଙ୍କୁ ରାନ୍ଧବାଢ଼ି ପରଷି ପାରବ ! ହାଗବୋଉ ସିନା ନୂଆ, ମାଳ ତ ସେ ଗାଁରେ ଅଜଣା ମଣିଷ ନୁହଁ !

ହଳକୁହଳ ଝିଅ ଝିଆଣିଆଙ୍କ ଆସିବା ବେଶି ହେଲ । ଗାଁ ଭତରୁ ବ କେତେ ଝିଅ ମାଇପେ ବୁଲ ଅଇଲେ ନୂଆ

କୁନ୍ତୁଆଁ ମାନଙ୍କୁ ଦେଖିବା ପାଇଁ । ହାବୁ ପଟେ ଟଟେ ହେମନ୍ତ କେତେ ବାଡ଼ୁଅ, ଅହୁଅ, ସଧବା ଝିଅ ଆସି ଗୌରାଙ୍ଗ ଘରକୁ ଗହଳ କଲେ । ହାବୁବୋଉର ପାଦ ପାଞ୍ଚ ହାତରେ ପଡ଼ୁଥାଏ ଉଠୁଥାଏ । ରାଧୀ କେଉଟୁଣୀ, ଚମ୍ପାବୋଉ, ଉମା, ଦୁଲମା ଆସି ହାଜର ହେଲେ । ହାବୁବୋଉ ନାତିକୁ ନେଇ ସଭିଙ୍କି ଥରେ ଲେଖା ଦେଖାଇ ଆଣିଲା । କିଏ ତାକୁ ଚୁମ୍ବ ଦେଲା, କିଏ ତାର ଚିବୁକ ଧରି ଟାଣିଲା, କିଏ ଗୋଡ଼ ଦୁଇଟି ଧରି ହଲାଇଲା, ଆଉ କିଏ କୁତୁକୁତୁ କଲା । ପାଞ୍ଚ ମାସର ମୂର୍ଖ ପିଲାଟି କାହା କୁତୁକୁତୁରେ ହସିଲା, କାହା ଗୋଡ଼ହଲରେ କାନ୍ଦିଲା । ଭାରତର ଦରବୁଢ଼ା ଲୋକେ ବି ଏହି ମୂର୍ଖ ଶିଶୁଟି ଭଳି ବିନା କାରଣରେ ହସନ୍ତି, ପୁଣି ଅକାରଣରେ କାନ୍ଦନ୍ତି ।

ପିଲାଟିର ଚିବୁକ ଓଟାରିଦେଇ ସବା ଆଗରେ ମଥୁରି ସାହୁଙ୍କ ଝିଅ ଉମା ବାହାରି ଆସିଲା ହାବୁ ପାଖକୁ । ହାବୁଠାରୁ ବୟସରେ ସାନ ହେବ ସେ । ମଥୁରି ସାହୁ ଘର ଦେଖି, ବର ଦେଖି ପୁଣି ନିଜ ଲାଖି ସମ୍ବନ୍ଧ ଦେଖି ଉମାକୁ କୁସୁପୁର ନାଥ ପୃଷ୍ଟିଙ୍କ ବଡ଼ପୁଅ ମହେଶ୍ୱର ସାଙ୍ଗେ ବିଭା ଦେଇ ଥିଲେ । କେତେ ଲୋକଙ୍କ ଆଗେ ଖୁସି ହୋଇ ସେ ଝିଅ ଜୋଇଁଙ୍କ ନାଁ ଜହ୍ନପକାନ୍ତ—ଉମା-ମହେଶ୍ୱର । ସତକୁସତ ମହେଶ୍ୱର କେତେ ଜଣ ବାବାଜୀଙ୍କ ପିଛା ଧରି ଶେଷରେ ଘର ଛାଡ଼ି ସନ୍ନ୍ୟାସୀ ହୋଇ ପଡ଼ିଲେ । ଲୋକେ କୁହାକୁହି ହୁଅନ୍ତି, ନାଥ ପୃଷ୍ଟି ଭଳି ଲୋକଠା ପାଖରେ ଆଉ କାହାରି ବାପ ବି ଥପୁ ଧରି ପାରିବ ନାହିଁ, ନିଜ ପୁଅ ରହିଲା କିମିତି ? ମହେଶ୍ୱର ବର୍ଷକ ପରେ କଅଁଳ ନିଶ ଦାଢ଼ି ଛାଡ଼ି ଦେଇ ଡୋର କୌପୁନ ପିନ୍ଧି ଫେରିଲା ବେଳକୁ ଉମା ·ବାପ

ଘରେ ଥାଏ । ମଥୁର ସାହୁଙ୍କ ଆଗରେ କେହି ଏଣିକି ଝିଅ ଜୋଇଁଙ୍କ କଥା ପକେଇଲେ ସେ ବାଁରେଇ କହିଦିଅନ୍ତି । ବର୍ଷେ ହେଲା ତେଲ ବାଜି ନଥିବା ନୁଖୁରା ଦାହ ମୁଣ୍ଡ ଘେନି ମହେଶ୍ୱର ଯେତେବେଳେ ମଥୁର ସାହୁଙ୍କ ଦାଣ୍ଡ ଦୁଆରେ ପହଞ୍ଚିଲା, ତାକୁ ଏ ବେଶରେ ଚିହ୍ନି ପକେଇ ସାହୁ ବାଟ କାଟି ହାଟ ଗୋଦାମ ଆଡ଼କୁ ବାହାରିଗଲେ ।

ସାହୁଙ୍କର ପୁଅ ବାସୁ ନାକ ଟେକି ପଚାରିଥିଲା, "କୁଆଡ଼େ ଆସିଲ କି ?" ଗାଧୀ କେଉଟୁଣୀ ଚୂଡ଼ା ଟୋକେଇଟା କାଖେଇ ସେଇବାଟେ ଆସୁଥିଲା । ଖଞ୍ଜା ଭିତରେ ଝଟ୍ ଖବର ଦେଇଥିଲା, ଜୋଇଁ ଆଇଚନ୍ତି, ଦେଖିବ ଆସ । ଦାଣ୍ଡ ଦୁଆର ମୁହଁ ଜଳାକବାଟି ଫାଙ୍କରେ ଦଣ୍ଡକେ କେତେ ଝିଅ ବୋହୂଙ୍କ ନୋଥ ଗୁଣା ଦିଶିଗଲା । ମାଟିଆ ଜଳାକବାଟି ସନ୍ଧାରୁ ଫୁଟି ଦିଶିଲା କେତେ ମନ୍ଦାରଫୁଲିଆ ପାନଖିଆ ଓଠ, କେତେ ନାକଚଣା, କେତେ ଅଳକା, ମଥାମଣି, ଆଉ କେଉଁ ଗହଳିଆ ପତା ତଳେ ଜୁଳୁଜୁଳୁ କଳାଡ଼ୋଳା ଯୋଡ଼ିଏ । ସେସବୁ ମଥୁର ସାହୁଙ୍କର ଭାଇବୋହୂ, ଝିଆରି, ଭଣିଜା, ଶାଳୀମାନଙ୍କର । ଉମା ଦାଣ୍ଡ ଦୁଆର ଭିତର ପଟେ ଲହର ପହର ହେଉଥାଏ । ଭାଇଙ୍କ କଥା ତା କାନରେ ଶୁଭିଗଲା, "କୁଆଡ଼େ ଆସିଲୁ ?"

ସେ କଥାର ଜବାବ ଆସିଲା ଉମାର ଗୋଟାଏ ଅତି ଅଳ୍ପ ଦିନର ଚିହ୍ନା ସ୍ୱରରେ, "ନେବାକୁ ଆସିଛି ।"

"ନେବାକୁ ? କଣ ନେବାକୁ ?" ଉମାର ଭାଇ ଦଇତାରି ସ୍ୱରରେ ପଚାରିଥିଲା ।

"ତୋ ଭଉଣୀକୁ ।" ସେହି ଚିତ୍କାର ସ୍ୱରଟା ଖୁବ୍ ଜୋରରେ ଶୁଣାଗଲା ।

ତାହାପରେ ଉମାର ଦେହ ଥରି ଉଠିଥିଲା । ଦଇତାରି ମୁହଁକୁ ଯାହା ଆସିଲା, ସେ ଭଣୋଇକୁ ତାହା ବକିଲା । ମହେଶ୍ୱର ଭଳି ଫକଡ଼ ଭିକାରୀ ହାତରେ ଉମାକୁ ଦେଇ ଯାହା ହେବାର ହେଲାଣି । ଆଉ ସେ କେଉଁ ମୁହଁରେ ତାଙ୍କ ଦୁଆର ମାଡ଼ୁଛି । ଏମିତି କେତେ ଗାଳି ଫଜତି ଶୁଣି ମହେଶ୍ୱର ତୂନି ରହିଥିଲା । ଶେଷକୁ ଖାଲି କହିଥିଲା, "ଅ.ଚ୍ଛା, ତୋ ଭଉଣୀକ ପକ୍ଷରେ, ଏହି ଫକଡ଼ ଭିକାରୀ ହାତରେ ଯିବ, କି ବଡ଼ଲୋକ ଆରାମରେ ରହିବ ?"

ଦଇତାରିର ରାଗ ବହୁତ ଉଚ୍ଚକୁ ଉଠିଗଲା । ସେ ମହେଶ୍ୱରକୁ ଧକ୍କା ଦେଇ ବାହାର କରିଦେବ ବୋଲି କହିବା ବେଳେ ଉମାର ଗୋଡ଼ ଦି'ଟା ଅଥୟ ହୋଇ ଉଠିଥିଲା, ଦାଣ୍ଡ ମଝିକୁ ସ୍ୱାମୀର ହାତ ଧରି ବାହାରି ପଡ଼ିବାକୁ । ଶଳା ଭଣୋଇଙ୍କ ପାଟି ଶୁଣି ସେତେବେଳେ ଦାଣ୍ଡରେ କେତେ ଲୋକ ଜମା ହୋଇ ଗଲେଣି । ଉମାର ପାଦ ଚଳିଲା ନାହିଁ । ମହେଶ୍ୱର ଚାଲିଗଲା । ସେହିଦିନୁ ଆଜି ତାର ଖବର ନାହିଁ । ସେହି ଦିନୁ ଉମା କିମିତି ଗୋଟିଏ ମାଟିପିତୁଳା ଭଳି ହୋଇଗଲା । ତାହାର ଆଖି, ନାକ, ଓଠକୁ ଯେମିତି ଜଣେ କଟକୀ କାରିଗର ନିଖୁଣ ଦେବୀ ପ୍ରତିମା କରି ଗଢ଼ିଛି । ହେଲେ, ଖାଲି ପ୍ରତିମାଟିଏ ସେ । ଭିତରେ ତାହାର ଟିକିଏ ଯେମିତି ଜୀବନ ନାହିଁ ।

ଉମା ହସେ ଖେଳେ, ଅଣ୍ଟା ଛାପଟ କରେ । ତେବେ ତାହାର ଉପର ଚେହେରାକୁ ଦେଖି ବୁଝା ପଡ଼େ, ଭିତରେ ଭିତରେ କାହାକୁ

ଯେମିତି ସବୁବେଳେ ସେ ଝୁରୁଚି । ହାଗକୁ ତ ସେ ଦଣ୍ଡକ ଭିତରେ ଆପଣାର କରି ପକେଇଲା । ସତେ ଅବା କେଉଁ କାଳରୁ ସେ ତାହାର ଚହ୍ନା ଯାଙ୍ଗ !

ପୁଣି ସୁନା ଆସିଲା ପରେ ତା ସାଙ୍ଗରେ ଏକାବେଳେ ଜଡ଼ାଚେଲ ମେଣ୍ଟାବାଳ ହୋଇଗଲା । ଏମିତି ହେଲା ଯେ, କେହି କାହାକୁ ଦଣ୍ଡେ ଛାଡ଼ି ରହି ପାରିଲେ ନାହିଁ । ସୁନା ଯେବେ ଘରେ ନାହିଁ, ତେବେ ସେ ଭ୍ରମା ପାଖରେ । ଭ୍ରମା ବି ଯେତେବେଳେ ସେତେବେଳେ ଆସି ସୁନା ପାଖରେ ହାଜର । ବନ୍ଧୁବାନ୍ଧବ ଗହଳରେ ଗୌରାଙ୍ଗ ଘରେ ଥାନ ମିଳେ ନାହିଁ । ଦୁହେଁ ଯାଇ ଡିଙ୍କି ଶାଳଆରେ ଗପସପ ହୁଅନ୍ତି । କେତେବେଳେ ପୋଖରୀ ଭୁଠ ଓଳଗଛ ମୂଳେ ପାକଲା ଓଳ ଲୁଣ ଦେଇ ଖାଉଥାନ୍ତି, ଆଉ ଗପ ସୁଅ ଚାଲିଥାଏ ।

ଗୌରାଙ୍ଗର ଅଗଣା ଭିତରେ ବେଶୀ ଲୋକ ଚଳାଚଳ ପାଇଁ ଚାଳଚାଟି ଘୁମୁଣ୍ଡିଆ ବନ୍ଧାହେଲା । ବେଢ଼, ଚୁଲୀ, ଖଞ୍ଜାଶାଳ ଯାହା ଯେମିତି ଠିକଣା ହେଉଛି । ଭ୍ରମା ସୁନାଙ୍କ ଗପସପ ଭିତରେ ତେଣିକି ନଜର ଦେବାକୁ ତର ନାହିଁ ।

ଆଜି ହାଣ୍ଡି ମଙ୍ଗୁଳା । ସବୁଦିନ ପରି ବରଜୁ କୁଆ ନ ରାବୁଣୁ ଉଠିଛି । ଡଙ୍କା, ଚଟୁ, ହାଣ୍ଡି, ପଲମ, ଡାଲି, ଗୁଡ଼ୁଳ, ପନପରିବା ଯୋଗେଇବାରେ ସେ ଭାରି ବ୍ୟସ୍ତ । କିଏ କେତେ ବରାଦ ବୁଝୁଚି, କିଏ କଣ ପଚାରୁଚି, ସବୁ କଥାକୁ ତାର ଖିଆଲ ରହୁନାହିଁ । କୁଟୁଆଁ ମଇଜ, ପିଲାଛୁଆ, ଗଲାଅଇଲାରେ ଘର ଗୋଟାକ ଭର୍ତ୍ତି ।

“ପଧାନକୁ କଣ ଜମାରୁ ତର ନାହିଁ !”—ବରଜୁ ଫେରି ପଡ଼ି ଦେଖିଲା ନାଥ ବାବୁଙ୍କ ସାଥିରେ ଆଉ ବାବୁମାନେ ମଧ୍ୟ ଆସିଛନ୍ତି । କହିଲା, “ସକାଳୁ ଏଣିକି ବାହାରି ପଡ଼ିଲେ ଯେ ?” ଜମ୍ବୁବାବୁ କହିଲେ, “ଆମର ଆଉ ସଞ୍ଜ ସକାଳ କଣ, ବୁଲିବା ତ ହେଲା କାମ ।”

ପିଣ୍ଡା ତଳେ ଖଣ୍ଡେ ନଡ଼ିଆ ଗୁଞ୍ଜ ପଡ଼ିଥାଏ । ସେ ଖଣ୍ଡ ବାବୁମାନଙ୍କୁ ବସିବାକୁ ଦେଇ ବରଜୁ କହିଲା, “ମୋର ତ ଆଜି ବଡ଼ ଭାଗ୍ୟ । ଗରିବ ଦୁଆରେ ଆପଣମାନଙ୍କ ପାଦ ପଡ଼ିଲା । ହଁ, ମୋର ସିନା ଏ ଘର ନୁହଁ, ଗୌରି ଘରେ ଆସି ରହିଛି । ତେବେ କଣ କି, ଗଉରି ବି ଏ ଘରକୁ ତାର ଆପଣାର ବୋଲି ମୋ ଆଗରେ କହିବାକୁ ରାଜି ନୁହଁ । ତେଣୁ ଏହାକୁ ଯେ ନିଜର ହିସ୍ଥରବେ ତାଙ୍କ ଘର ।” ବରଜୁ ହସିଲା ।

ନାଥବାବୁ କହିଲେ, “ବୁଝିଲ ପଧାନେ, ମୋର ଦୁର୍ଭାଗ୍ୟ ଯେ ତୁମ ଗାଁରେ ଏତେ ଦିନ ରହିଲଣି, ଆଜିଯାକେ ତୁମ ପାଖକୁ ଆସିପାରି ନାହିଁ ।”

“ମୋର ଆଗ ତ ଭେଟିବାର କଥା ବାବୁ ! ତେବେ କଣ କି, ଢେଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ଗାଁଗଣ୍ଡା ଘରଦୁଆର

ଗୁଡ଼ ଏଠାରେ ଆସି ରହିଲ ଯେ, ମୋତେ ହେଲେ ଜଞ୍ଜାଳ କେତେବେଳେ ଗୁଡ଼ୁନ୍ତି । ଯେଉଁଠିକି ଗଲି, ସବୁଠି ଖାଲି ସେହି ଧାନକୁଟା ପାଣିବୁହା । ଗୌରୀ ଯେମିତି ମତେ ତା'ଘରେ ଦେଖିଛି, ଆଗେ ଯାହା ବା ଟିକିଏ ବୁଝାଶୁଝା କରୁଥିଲି, ଏଣିକି ସବୁ ମୋ ଉପରେ ଫୋପାଡ଼ି ଦେଇ ନିଶ୍ଚିନ୍ତ ହୋଇଗଲା । କେତେବେଳେ ଟିକିଏ ତର ମିଳିଲେ ସିନା କୁଆଡ଼େ ବାହାରନ୍ତି କି କାହା ସାଙ୍ଗରେ କଥାବାର୍ତ୍ତା ଦି'ପଦ କରନ୍ତି !"

ମଦନ ବାବୁ କହିଲେ, "ଆମେ ତ ତୁମ ଉପରେ ଆଉ ଗୋଟାଏ ଜଞ୍ଜାଳ ଲଦିବାକୁ ବାହାରିଛୁଁ, ପଧାନେ !"

କିଛି ବୁଝି ନ ପାରି ବରଜୁ ପଚାରିଲା, "କଣ ଜଞ୍ଜାଳ ବାବୁ ?"

ନଶାମଣି ଖଣ୍ଡେ ନଡ଼ିଆପତ୍ରରୁ ଖଡ଼ିକାଟିଏ ଉଣ୍ଡି କହିଲେ, "ଜଞ୍ଜାଳ କିଛି ନୁହଁ ଯେ ପଧାନେ, ଆମେ ଖାଲିଟାରେ ବସି ଖୁସି ଗପ କରି ଯେଉଁ ସମୟ ନଷ୍ଟ କରୁଁ, ସେହିଟାକୁ କାମରେ ଲଗାଇବାକୁ ହେବ ।"

ଖାଲିଟାରେ ବସିବା, ସମୟ ନଷ୍ଟ କରିବା—ଏସବୁ କଥା ବରଜୁ କିଛି ବୁଝି ପାରୁ ନ ଥାଏ । କେତେବେଳେ ବା ସେ ଖାଲି-ଟାରେ ବସି ଦିନ କଟାଏ ? କାହିଁ, ଦଣ୍ଡେ ହେଲେ ତ ନୁହେଁ ! ସକାଳୁ ସଞ୍ଜ ଯାକେ କେତେବେଳେ ତାକୁ ଫୁରୁସତ ମିଳେ ? ସେଥିପାଇଁ ତ ତାକୁ ଯାଇ ପଡ଼ଶା ଲୋକେ ଥଟ୍ଟା ତାମସା କରନ୍ତି । ପୁନିଅ ପର୍ବରେ ଲୋକେ ମଉଜ ମଜଲିସ୍ କରନ୍ତି, ଯାତ ତଥ ଦେଖନ୍ତି । ସେ ତ କାହିଁକି କେବେହେଲେ ମନ ଲଗେଇ ଏ ସବୁରେ

ମିଶି ପାରେ ନାହିଁ ! ଟାଣି ଓଟାର କେହି କେବେ ଡାକ ନେଲେ ଅଛୁଆଙ୍କ ପରି ଦୂରରେ ବସି ଖାଲି ବୃନ୍ଦେଁ ମୁହଁଟାକୁ, ସେମିତ ହାଣ୍ଡି ଭଳି କରି । ସେଥିପାଇଁ କିଏ ଯେବେ କିଛି ମେଳା ମଉଛବ ଭଜନ ଆଖଡ଼ାକୁ ତାକୁ ଡାକିଆସେ, ସେତେବେଳେ ଡରରେ ବରଜୁର ପିଳେହି ପାଣି ହୋଇଯାଏ । ଗଲେ ତ ତାର ମନ ଲାଗିବ ନାହିଁ, ନ ଗଲେ ପୁଣି ସମସ୍ତେ କହିବେ ଗୋଠଖଣ୍ଡିଆ । ତେବେ ଏହି ପାଠପଢ଼ୁଆ ବାବୁମାନେ ତ କିଛି ଗାଉଁଲିଙ୍କ ଭଳି ଟଗଲା ନୁହନ୍ତି ଯେ, ତାକୁ ମଉଜ ମଜଲିସ୍‌କୁ ଡାକୁଥିବେ ! ସେମାନେ ପୁଣି ଦେଶକାମରେ ବାହାରିଚନ୍ତି । ପାଁ ଜଣଙ୍କର କି ଭଳି ଭଲ ହେବ, ସମସ୍ତେ ସୁଖରେ ଚଳିବେ, ଏହି ତ ତାଙ୍କର କାମ, ଏ କଥା କଣ ବରଜୁ ବୁଝିନାହିଁ ଯେ, ସେମାନେ ତାକୁ କିଛି ମନ୍ଦ ପରାମର୍ଶ ଦେବେ ବୋଲି ଡରିବ !

ସେ ବସିପଡ଼ି ନିର୍ଭୟ ହୋଇ କହିଲା, "କଣ ମତେ କରିବାକୁ ହବ, ଫିଟେଇ କହନ୍ତୁ ।"

ଜୟକୃଷ୍ଣ କହିଲେ, "ଏ କଣ, ଆପଣ ତଳେ ବସିଲେ, ଆମେ ତେବେ ଖୁଣ୍ଟଡ଼ାରେ ବସିବୁଁ କାହିଁକି ?"

"କିଛି ନାହିଁ ବାବୁ, ମାଟି ପରା ଆମ ବେଉସା । ତା' ଉପରେ ବସିଲେ ତ ଆମ ଲୁଗା କୋଉଠି ହବ ନି !" ହସି ହସି ବରଜୁ ଜବାବ ଦେଲା ।

ନିଶାମଣି ବରଜୁ ପାଖକୁ ଲାଗିଆସି କହିଲେ, "ହରିପୁର ଗାଁରେ ତୁମକୁ ସବୁ କାମ କରିବାକୁ ହେବ ପଧାନେ । ତୁମେ ତ କଂଗ୍ରେସର ନାମ ଶୁଣିଥିବ !"

"ହଁ ଶୁଣିଛୁ ଯେ, ତେବେ କଣ କି, ଆମ ଭଳି ଅଳପିକିଆ ମୂଳିଆମୁଣ୍ଡ, ସେ ତ ସବୁ ବଡ଼ ବଡ଼ କଥା । ଆମର ଏତେ ଗହୀରରେ ଗୃଷ କାହିଁ ?"

"ତମର ଯେତିକି ଗହୀରରେ ଗୃଷ, ସେତିକିରେ ଚଳିବ । ଆମେ ସବୁ ତ ତୁମର ସାଙ୍ଗେ ସାଙ୍ଗେ ଅଛୁଁ, ସବୁରି ସେବା କରିବୁଁ । ତମେ ଆମକୁ ସାହାଯ୍ୟ କରିବ, ଆମେ ତମକୁ କରିବୁଁ । ତା' ନ ହେଲେ ଦେଶ ଉଠିବ କେମିତି ?"

"ମୁଁ କଣ କରିପାରିବି ବାବୁ ? ମୋ ଜଞ୍ଜାଳ ତ ମତେ ବଳେଇ ପଡ଼ିଚି ।"

ଜୟକୃଷ୍ଣ କହିଲେ, "ଆପଣ ଯେବେ ଏମିତି କଥା କହିବେ, ଆମେ ତା' ହେଲେ ବୁଝେଇବୁଁ କାହାକୁ ? ଜଣେ ଜଣେ ହୋଇ ତ ଦେଶ । ଆପଣଙ୍କ ଭଳି ଜାଣିବା ଶୁଣିବା ଲୋକ ଯେବେ ପଛଘୁଞ୍ଚା ଦେବେ—"

"ତେବେ ଆଉ ସ୍ୱରାଜ୍ୟ ମିଳିବ କିପରି ?" ମଦନ ଜୟକୃଷ୍ଣଙ୍କ କଥାର ବାକିତକ ପୂରଣ କରିଦେଲେ ।

× × ×

ସ୍ୱରାଜ ! କଣ ଏଇ ସ୍ୱରାଜ ! ବିରଜୁ ମୁଣ୍ଡରେ ହଜାରଟା ଚିନ୍ତା ଖେଳିଗଲା । ଏଇ ସ୍ୱରାଜ କଥାଟା କେତେ ଲୋକଙ୍କ ମୁହଁରୁ ଶୁଣା ଯାଉଛି । ବିରଜୁ ତ ତା' ପିଲାଦିନେ ଏ କଥାଟା କାହିଁ ଶୁଣି ନ ଥିଲା ! ଏ ନୂଆ କଥାଟା ତେବେ କଣ ? ହରିପୁର ନାରଣ ପଣ୍ଡିତେ କହୁଥିଲେ, ସ୍ୱ ବୋଇଲେ ନିଜ, ରାଜ ବୋଇଲେ ରାଜତ୍ୱ—ମାନେ ନିଜେ ନିଜର ରାଜା । ନିଜ ରାଜତ୍ୱ ନିଜର; ପରର ନୁହେ । ସେତେ

ଯେବେ ବରଜୁ ପର ରାଜୁତିରେ ଅଛି, ତେବେ ତାର ନିଜ ରାଜୁତି କଣ ହେବ !

"ଆଜି କଣ ଭାବୁଚ, ଆମପରି କେତୁଟା ଲଣ୍ଡାମୁଣ୍ଡିଆ ଧୋବ ଧାଉଳିଆ ବାହାରିଲେ ଦେଶର ଦୁଃଖ ଘୁଞ୍ଚିଯିବ ?" ନଶାମଣିଙ୍କ କଥାରେ ବରଜୁର ଭାବନାଧାରା ଭାଙ୍ଗିଗଲା ।

ଜୟକୃଷ୍ଣଙ୍କ କଥା ମଧ୍ୟ ତେଜି ଉଠିଲା, "କଦାପି ନୁହେଁ । ଆପଣା ଦୁଃଖ ଆପେ ଘୁଞ୍ଚାଇବାକୁ ନ ବାହାରିଲେ ଆଉ କାହାର ଗରଜ, କିଏ କାହିଁକି ବାହାରିବ ? ଆପଣମାନେ ତ ଦେଖୁଛନ୍ତି, ଏ ଦେଶର କେତେ ମହାପ୍ରାଣ ଆଜି ସବୁ ସ୍ୱାର୍ଥ ତ୍ୟାଗ କରି ନିଆଁକୁ ଡେଇଁଛନ୍ତି । ଏଥର ଆମର ପ୍ରଧାନ ମନ୍ତ୍ର ହେଉଛି, ତ୍ୟାଗ ଆଉ ଅହିଂସା । ଏ ଯୋଡ଼ାକ କଥା ଆପଣ ଯେମିତି ପାଳିଛନ୍ତି, ସେମିତି ଅବା କୋଟିକେ ଗୋଟିଏ ମିଳିବେ । କେତୁଟା ଲୋକ ଘରକୁ ସବୁ ସମ୍ପତ୍ତି ଛାଡ଼ି ବାହାରି ଆସିଲେଣି । ଆମେ ତ ଏତେ ଗାଁ ବୁଲୁଛୁ । କେଉଁଠି ଏ କଥା ଶୁଣିନାହୁଁ । ଆପଣ ଦେଶପାଇଁ ନ ବାହାରିବେ ତ ଆଉ ବାହାରିବ କିଏ ?"

"ହଉ ବାବୁ, ମତେ ଆଉ ଏତେ ଉପରକୁ ଟେକନ୍ତୁ ନାହିଁ । ମୋ ହାତରେ ଯେତିକି ହବ, ମୁଁ ସେତିକି କରିବାକୁ ରାଜି ।"

ସତକୁସତ ବରଜୁ କଣ ଏମିତି କରୁଛି ଯେ ବାବୁମାନେ ଏତେ ଟେକାଟେକି କରି କହୁଛନ୍ତି । କଥାଗୁଡ଼ାକ ତାକୁ ବଡ଼ ଅଡ଼ୁଆ ଶୁଭୁଥାଏ । ସେଥିପାଇଁ ସେ ଆଉ ତାଙ୍କୁ କୁହାଇ ନ ଦେଇ ରାଜି ହୋଇଗଲା । ସେମାନେ ବା ତାକୁ କି କାମ ଦେବେ ? ଅରଟରେ ସୂତା କାଟିବା ତ ! ବରଜୁ ତାହା ଜାଣେ ନାହିଁ ?

ନାଥବାବୁ ଖୁସି ହୋଇ କହିଲେ, "ତୁମେ ରାଜି ନ ହେଲେ ଆମେ କଣ ତୁମକୁ ସହଜରେ ଆଜି ଛାଡ଼ିଥାନ୍ତୁ । ତମର ଦୁଆରେ ତ ସତ୍ୟାଗ୍ରହ କରାଯାଇଥାନ୍ତା ।"

ବରଜୁ ନଇଁ ସଇଁ କହିଲା, "କାହିଁକି ବାବୁ, ମୁଁ କିବା ଲୋକ ଯେ, ଏଡ଼େ ବଡ଼ କଥା କହୁଛନ୍ତି । ଖବର ଦେଲେ ତ ମୁଁ ଯାଇ ତତକ୍ଷଣେ ଆପଣଙ୍କ ଦୁଆରେ ହାଜର ହେବି । ଆପଣମାନଙ୍କ ପାଦ ଏଠି ପଡ଼ୁଛି । ମୋର ଆଉ ରାଜି ବେରାଜି ପଚାରୁଛନ୍ତି କାହିଁକି ? ଅରଟରେ ସୂତା କାଟିବା କଥା ତ ! ହିଁ କଉଁକାଳୁ ଆମ ଘରେ ଉପରେ ଖଣ୍ଡେ ଭଙ୍ଗା ଅରଟ ପଡ଼ିଥିଲା । ସେ ଖଣ୍ଡ ସଜାଡ଼ି ପହିଲେ ପହିଲେ କେଇ ଦିନ ସୂତା କାଟିଥିଲି । ବୋଉ ଆମର ସେ ଖଣ୍ଡ ଦେଖି ଭାରି ଖୁସି ହଉଥିଲା । ସେ କୁଆଡ଼େ ସେଇ ଅରଟରେ ସୂତା କାଟି ଆମପାଇଁ ମାଣେ ଜମି ଖରିଦ କରିଥିଲା ।"

"ନାଇଁ ପଧାନେ, ତୁମକୁ ଖାଲି ସୂତା କାଟିବାକୁ କହିବାପାଇଁ ସମସ୍ତେ କଣ ଆସିଛୁଁ ? ଅସଲ କଥା, ଆମ ଗାଁରେ ଗୋଟିଏ ସୂତା କଟା କେନ୍ଦ୍ର ଖୋଲାଯିବ । ଏହି କେନ୍ଦ୍ର ଜରିଆରେ କଟାଳିମାନଙ୍କୁ ତୁଳା ଯୋଗାଇଦେଇ ତାଙ୍କଠାରୁ ସୂତା ନେଇ ଲୁଗା ବୁଣେଇବାକୁ ହେବ । ହାଟ ଉପରେ ମଥୁରି ସାହୁ ମହାଜନଙ୍କର ଯେଉଁ ଗୋଦାମଘର ଦାଣ୍ଡିଟା ଅଛି, ସେଥିରୁ ସେ ଆମ ଆଶ୍ରମ ପାଇଁ ଦି' ବଖରା ଦେଇଛନ୍ତି ।"

ବରଜୁ ଖୁସିହୋଇ କହିଲା, "ବାଃ, ମଥୁରି ସାହୁଙ୍କର ତ ଦେଶପାଇଁ ଭାରି ମନ ।"

ନାଥବାବୁ କହିଲେ, "ସେ କଣ ସହଜେ ରାଜି ହେଉଥିଲେ ? ଆମକୁ ଦେଖିଲା କ୍ଷଣି ତ ବୁଢ଼ା ବଚରା ଆଗ ଡରିଗଲା । ହାତ ଯୋଡ଼ି

କହିଲା, ସେ କଥା ମୋତେ କହନ୍ତ ବାବୁ ! ମୁଁ କଏ, ଇଂରାଜ ସରକାର କଏ । କାଲି ସକାଳେ ପୁଲିସ ଆସି ମୋ' ଘର ଖାନତଲାସ କରିବ । ପିଲାଏ ମୋର ବେଇଜତ ହେବେ । ମୁଁ ଏତେ ଅଡ଼ୁଆ ଝଞ୍ଝଟିକୁ ପାରିବି କାହିଁ ? ଆମେ କହିଲୁଁ, ସେ କି କଥା ମହାଜନେ, ତମ ଘରପାଇଁ ଆମେ ମାସକୁ ମାସ ଭଡ଼ା ଦେବୁଁ । ଆମକୁ କଣ ଘରଭଡ଼ା ଦେଇ ରହିବାକୁ ସରକାର ମନା କରିଚି ଯେ ପୁଲିସବାଲା ତମକୁ ଧମକେଇବେ । ବୁଝେଇ ବୁଝେଇ ଫାଟିଫୁଟି ଗଲୁଁ । ବୁଢ଼ା କାହିଁରେ ହେଲେ ନ ମଙ୍ଗେ । ଶେଷରେ କହିଲା, ମୁଁ ପଛେ ଆଜି କାଲି ସ୍ୱରାଜ ବାବନ୍ତକୁ ଦେଉଛୁ, ମତେ ଆଉ ଘର କଥା କହ ନାହିଁ । ସେଥିରୁ ସମସ୍ତେ ହଟିଗଲେ, ଏକା ଏହି ଜୟକୃଷ୍ଣ ଗୋଟାଏ ଭଲ ଫିକର କଲେ । ଆଚ୍ଛା ହଉ, କେମିତି ଘର ନ ଦବ । ଆମେ ସବୁଜଣଯାକ ତୁମ ଦୁଆରେ ସତ୍ୟାଗ୍ରହ କଲୁଁ । ଏହିଠାରେ ଆଜଠୁଁ ନ ଖାଇ ନ ପିଇ ପଡ଼ି ରହିବୁଁ । ତେଣିକି ତୁମେ ପୁଲିସ ଡାକି ଆମକୁ ତୁମ ଦୁଆରୁ ଘୋଷାରି ତଡ଼ି ପଛକେ, ଏହିଠାରେ ପଡ଼ିଥିବୁଁ । ମୁହଁରୁ ତା'ର କଥା ବାହାରିବାକୁ, ସେ ଲମ୍ବ ହୋଇ ମହାଜନ ଦୁଆରେ ମୁହଁ ମାଡ଼ି ପଡ଼ିଗଲା । ତା' ସଙ୍ଗେ ସଙ୍ଗେ ଆମେ ତିନିହେଁ ବି ସେମିତି ଲମ୍ବ ହୋଇ ପଡ଼ିଲୁଁ । ବୁଢ଼ା ଆଉ ଯାଏ କୁଆଡ଼େ ? ଲୋକଟି ଠିକଏ ଧର୍ମଭୀରୁ କି ନା ! ସେଥିପାଇଁ ସମ୍ଭାଳି ପାରିଲା ନାହିଁ । ବହୁତ କଟାଳ କଲା ସତ୍ୟାଗ୍ରହ ନ କରିବାକୁ । ଶେଷକୁ ଜଣ ଜଣ କରି ହାତ ଧରି ଉଠାଇ ଜବାବ ଦେଲା, ହଉ, ବାବୁ ! କାହିଁକି ମତେ ହଇରାଣ କରୁଚ । କାଲିଠାରୁ ତମକୁ ମୋର ଘର ଭଡ଼ା ଦବାର ହେଲା । ଏକା ମାସକ ଭିତରେ ତୁମେ ନୂଆ ଘର କରି ମୋ ଘରଖଣ୍ଡ ଛାଡ଼ିଦେବାକୁ ହେବ ।"

ବରଜୁ କହିଲା, "ଯାହା ହଉ, ଖାସା ଉପାୟରେ ଆପଣ ବୁଢ଼ାଙ୍କୁ ମଙ୍ଗେଇଲେ । ନଇଲେ କି ସେ ସହଜରେ ଛାଡ଼ିବା ଜନ୍ତୁ ।"

"ଖାଲି କଣ ସେତିକି ମଙ୍ଗେଇଚି, ପଧାନେ ? ବନା ଭଡ଼ାରେ ବି ଘର ଖଣ୍ଡେ ମିଳିବ । ସେ କଥାଟି ଏକା ବାହାରେ କେହି ଜାଣିବେ ନାହିଁ । ବୁଝିଲ କି ?" ଜୟକୃଷ୍ଣ ତାଙ୍କ ସାଥୀମାନଙ୍କୁ ଚାହିଁ ହସିଲେ ।

"ବୁଢ଼ା ସାହା ଟିକିଏ ଆଗପଛ ହେଉଥିଲେ, ଯେତେବେଳେ ଶୁଣି ପକାଇଲେ ଜୟକୃଷ୍ଣ ବାବୁଙ୍କ ବାପାଙ୍କ ନାଁଟି, ଯେତେବେଳେ ତ କାବା ହେଇ ଚାହିଁଲେ । ଏଁ, କଣ କହୁଚ ? ତମେ ରାଧାକୃଷ୍ଣ ବାବୁଙ୍କ ପୁଅ ? ତମେ ଆମକୁ କାହିଁକି ଚିହ୍ନିବ, ବାବୁ ! କେତେ ଥର ମୁଁ ତମ ଘରକୁ ଯାଇଚି । ସେ ଆଜିକି ପଚିଶ କି ଛବିଶ ବର୍ଷ ତଳର କଥା । ତମ ବାପାଙ୍କ ସାଥିରେ କଲିକତା ଯାଇ କାରବାର କରିଚି । ବୁଢ଼ୀ ଅଛନ୍ତି ନା ? ତାଙ୍କୁ ପଚାରିବ, ସେ ନିଶ୍ଚେ ହେଲେ ଜାଣିଥିବେ । ବହୁତ ଚର୍ଚ୍ଚା ସେ କରିଛନ୍ତି । କେତେ ଭଲ ଜିନିଷ ଖୁଆଇଛନ୍ତି । ସାହାହେଉ ଜୟକୃଷ୍ଣଙ୍କ କୃପାରୁ ମଥୁରି ସାହୁଙ୍କ ଘରେ ଆମ ସମସ୍ତଙ୍କର ଦି' ଦି' ଥର ନିମନ୍ତ୍ରଣ ମଧ୍ୟ ହୋଇ ସାରିଲାଣି ।"

"ସେ ତ ହବାର କଥା । ଏତେ ଖବୁଚ ଯେତେବେଳେ— ହଉ ଆପଣମାନେ ଆସନ୍ତୁ । ଯାହା କରିବାକୁ କହିବେ ମୁଁ ସବୁବେଳେ ହାଜର ଅଛି ।"

ବରଜ୍ ହିଁ ଉତରଦେଲା । ଭଲ ମନ୍ଦ ବିପଦ ଆପଦ କିଛି ବିଚାରିଲା ନାହିଁ । ସେ ଜାଣେ ତାହାର ହଁଓଟି ସାନ ପିଲା, ଘରେ ପୁଣି ହାଡ଼ବୋଉ ଅଛି । ତାକୁ ତ ପଚାରିଲା ନାହିଁ । ସେ ମୂର୍ଖ ମାଇପି ଲୋକ । ଏ ସବୁ କଥା ବୁଝିବ କଣ ! ହେଲେ ତା' ପିଲାଙ୍କୁ ତ ପୁଣି ସେହି ସମ୍ଭାଳୁଛି । ଘରଭିତରର ସବୁ ହାନି ଲାଭ ତ ତାରି ଉପରେ । ତାକୁ ଥରେ ବିଚାରିବା ନ ଥିଲା କି ?

ହାଡ଼ବୋଉ ହାଣ୍ଡିମଙ୍ଗୁଳା ପାଇଁ ବାଉକାଣୀକୁ ଡାକି ଦୂବ ବରକୋଳିପତ୍ର, ଚୂଆସିନ୍ଦୂର ସଜାଡ଼ିବାରେ ଲାଗିଛି । ଦାଣ୍ଡଦୁଆରେ ଶଙ୍ଖ ମହୁରି ବାଜିଲାଣି । ଏତିକିବେଳେ ବରଜୁ ତାକୁ ଡ଼ାକି ପଚାରିଲା, "ଶୁଣିଲଣି, କଂଗ୍ରେସିଆ ବାବୁମାନେ ମୋ ପାଖେ ଲଗେଇଛନ୍ତି, ତାଙ୍କ ସାଥିରେ କାମ କରିବାକୁ ।" ସେ ବିଚାରିଥିଲା, ହାଡ଼ବୋଉ ତା' କଥା ଶୁଣି ଚମକି ପଡ଼ିବ । ବାବୁମାନଙ୍କ ଭିତରେ ବି ବରଜୁର ଏତେ ଖାତିର ଅଛି ଶୁଣି ଖାଲି ଖୁସି ହେବ । ତେବେ ହାଡ଼ବୋଉ ତା' କଥା କାନକୁ ନେଲା ନାହିଁ । କହିଲା, "ହଉ, କଣ କରୁଚ କର । ଠାକୁରଘର ପେଡ଼ି ଭିତରୁ ଠାକୁରାଣୀଙ୍କ କଳା କଉଡ଼ିଆ ଖଣ୍ଡ କାଢ଼ିଦବଟି । ଖରା ମାଡ଼ି ଆସୁଛି, ସବୁ ମାଇପେ ହାଣ୍ଡି ମଙ୍ଗୁଳାକୁ ବାହାରିଲେଣି ।"

ହାଡ଼ବୋଉର ତରବର ଦେଖି ବରଜୁ ଆଉ କିଛି କହିଲା ନାହିଁ । ମୂର୍ଖ ମାଇପିଟା ସେ । ଏସବୁ କଥା ଓଲଟି ତାକୁ ଆସି ବଗାଡ଼ କରୁଚ । ଘରଭିତରଟା ମାଇପି ଗହଳରେ କମ୍ପୁଥାଏ । ଯେତେ ସୁଆଡ଼େ ବନ୍ଧୁବାନ୍ଧବ ଥିଲେ ଗୌରୀ କାହାରିକି ନ ଡାକି ଛାଡ଼ି ନାହିଁ । ଏମିତି କି ନିଜେ ଗାଡ଼ି ଯୋଚି ଦାମ ମୋହନ୍ତିଙ୍କୁ ସାଥିରେ ନେଇ ନେବିମଣିଙ୍କ ବି ସଙ୍ଖୋଳି ଆଣିଚ । ଛକଡ଼ି ଯେତେ ମନା କଲା

କଣେଷକୁ ଗୌରୀର ଜଗର ରହିଲା । ବାହାଘର ଧନଟା ଘରେ ତାଲା ପକେଇ ନିଜେ ଯିବ ବୋଲି ଜବାବ୍ କରି ଛକଡ଼ି ବଡଗ ଏକା ଘରଜଗିଆ ହୋଇ ଥାଏ । ଘରଯାକ ସମସ୍ତେ ତ ଗୌରୀର ପ୍ରୀତିବନ୍ଧୁ । ନେହମଣି, ଛକଡ଼ି ନ ଯିବେ କାହିଁକି !

ହାଣ୍ଡି ମଙ୍ଗୁଳାକୁ ଯିବେ ବୋଲି ନାଲି, ନେଳି, ହଳଦିଆ ପୁଣି କେତେ ରଙ୍ଗର ଛିଟଶାଢ଼ୀ ପିନ୍ଧି ଝିଅ ମାଇପେ ସଜ ହେଉଛନ୍ତି । ଝଣ୍ଡେ ନାଲି କୁମ୍ଭଶାଢ଼ୀ ପିନ୍ଧି ହାବ୍‌ଲବାଉର ଗୋରା ତକତକ ଦେହଟା ବରଜୁ ଆଖିକି ଭାରି ସୁନ୍ଦର ଦିଶୁଥାଏ । ଆମ୍ବୁଲ ପାଣିରେ ଧନକ ଆଗରୁ ରୂପା, ପିତ୍ତଳ ଅଳଙ୍କାରଗୁଡ଼ିକୁ ଘଷାଇ ମଜା ଚକ୍ଚକିଆରେ ମାଜି ସବୁ ଝିଅ ମାଇପେ ପିନ୍ଧିଥାନ୍ତି । ରଙ୍ଗଢ଼ଙ୍ଗିଆ ଶାଢ଼ୀକୁ ଚକଚକ ଗହଣା ଖାସା ମାନୁଥାଏ । ଘର ବାହାର ଯେମିତି ହସି ଉଠୁଛି । ସବୁରି ଭିତରେ ହାବ୍‌ବୋଉକୁ ଆଜ୍ଞ ଚରଚଇତ ହେବାର ଦେଖି ସେ ମନେ ମନେ ହସିଲା । ଆପଣା ଘରଦୁଆର ଛାଡ଼ି ପରଘର ବୋଲି ଆଜି ତ ଆଉ କାହିଁକି ତା'ର ମନେ ପଡ଼ୁ ନାହିଁ । ଆଜି ତ ସେହି ନେହମଣିକି ଆଖି ଆଗରେ ଦେଖି ତାହାର ଖୁସି କାହିଁରେ ହେଲେ ଊଣା ନୁହଁ । ପର ଘରେ ଘରଣୀ ହେଉଚି ବୋଲି ଆଜି ତ ତା'ର ମନ ଭିତରେ କେଉଁଠି ଟିକିଏ ଲଜ ଦୁଃଖ ଥିଲା ପରି ଜଣାପଡ଼ୁ ନାହିଁ ।

ପିଲାଗୁଡ଼ାକ ପଲପଲ ହୋଇ ଧାଁଧପଡ଼, ଗୋଡ଼ଆଗୋଡ଼ ଖେଳକୌତୁକ ଲଗାଇଛନ୍ତି । ଗାଁ ଭିତରୁ କେତେ ପୁରୁଖା ଲୋକ ଆସି କେତେ କଥା ପଚାରି ବୁଝୁଛନ୍ତି । ବାହା ନିମନ୍ତେରେ ସବୁରି ତ ଟିକିଏ ବୁଝାଶୁଝା କରିବା କଥା । ତେବେ କାହିଁକି କେଜାଣି— ବରଜୁ ସବୁ ଦେଖୁଥାଏ, ଶୁଣୁଥାଏ, ବୁଝାଶୁଝା କରୁଥାଏ ସିନା, କାହିଁରେ ତାର ମନଟା ପୁରାପୁରି ଲାଗେ ନାହିଁ । ହଁ, ଧନ ଦ'ଟା

ଗୋଟାକର ତ ଉତ୍ସବ ! ତା'ପରେ ? ସେହ୍ନା ଘରେ ସେ । କିଏ କାହାକୁ ପଚ୍ଛରେ ? ପୁଣି ଆଜ ସକାଳେ ବାବୁମାନେ ତା' ପାଖକୁ ଆସି କଥାଭାଷା ହେଉଗଲେ ସେଇଠାରୁ ବଉଳକୁ ମନଟା ବେଶି ଚୋକେଇ ଘାଣ୍ଟି ହେଉଥାଏ ।

ସତେ ସେ କଣ ଭାବିବ, ଆଜଯାକେ ତ କାହିଁ କିଛି ଠିକଣା ହେଲା ନାହିଁ । ମାଟି ତାଡ଼ ପେଟ ପୁରାଇବା ତ ବଳତ କରୁଛନ୍ତି । ବଉଳକୁ ମଣିଷ ହେଇ ଜନ୍ମ କଣ ! ଝିଅ, ପୁଅ, ନାତି, ନାତୁଣୀ କେଉଁ ଜନ୍ମ ଜନ୍ମରୁ ନାହାନ୍ତି କି ! ବାହା ପୁଆଣି ମେଳା ମଉଚ୍ଛ ବା କେତେ ପଡ଼ିବ ସୁଖ । କେତେ ସେ ଦେଖିଲଣି, ଜାଣିଣି । ଆଜ ସେମିତି ଗୌରୀ ବାହାଘରେ ସେ ଲାଗିଛି । ଏ ଉତ୍ସବରେ କେତୋଟି ଲୋକ ବା ଖୁସି ହେବେ ! ବନ୍ଧୁବାନ୍ଧବ, ଗାଁ ଅଂଚଳ, ବାଜା ବଜନ୍ତ୍ରୀ, ମାଗ ମାଗୁଣି । ତେବେ ଆଜ ଏଣୁଷଣି ଯେ କେତେ ଗାଁରେ କେଉଁଠି ଘରର କାନ୍ଦ ବୋବା ପଡ଼ିଥିବ, ସେ କଥା ଭାବୁଛି କିଏ ? କେତେ ମା ପୁଅ ଝିଅଙ୍କୁ ହରାଇ, କେତେ ସ୍ତ୍ରୀ ସ୍ୱାମୀଙ୍କୁ ହରାଇ ଆଜ ତୁଏ ତ ମୁଣ୍ଡ କଚାଡୁଥିବେ । କାହିଁକି କେଜାଣି ବଉଳକୁ ସୁଖବେଳେ ଏଭଳି ଦୁଃଖ କଥାଗୁଡ଼ା ଯେ ମନେ ପଡ଼ଯାଏ, ସେ ନିଜେ ତାହା ବୁଝିପାରେ ନାହିଁ । ନାଃ, କାହିଁରେ ମନ ପ୍ରକୃତ ଖୁସି ହେବା ଯେମିତିକି ତା'ର କର୍ମରେ ଲେଖା ନାହିଁ ।

ଗୌରୀର ଆଜ ମଙ୍ଗନ, କାଲି ବାହା । କାଲି କେତେ ଲୋକ ସେଷଣୀ କରି ବର ସାଙ୍ଗରେ ଯିବେ । କନ୍ୟା ଘରେ ବ କେତେ ଉତ୍ସବ ଲାଗିଥିବ । ଏବେ ପୁଣି ବାହା ଋତୁ ପଡ଼ିଛି ଯେ ଗାଁ ଗାଁ ଘର ଘର ଯୁଆଡ଼େ ଦେଖ ବାହାଘର ନଇଲେ ପୁଆଣିଘର । ପୁଷ ମାସ, ଧାନଗଣ୍ଡାକ ସମସ୍ତେ ଏଭଳି ବାହା ପୁଆଣିରେ ସାରି ଦେଇ ତେଣିକି ଆକାଶକୁ ଚାହିଁବେ । ତେଣିକି ଦେଖ, କେଉଁଠୁ କାଢ଼ିଆ

ମିଳିବ, ନଇଲେ ବିଦେଶରେ ସ୍ୱର୍ଣ୍ଣ ପଇସା ଉପାର୍ଜ୍ଜ କରିବା । ଏହି ତ ସୂତ୍ର ଭଙ୍ଗିବ ବାହା ପୁଆଣି । ଏଥିପାଇଁ ଶହ ଶହ ଲୋକ ବାଜା ବଜେଇ ସକାଳୁ ପାଲିଙ୍କି ଧରି ଚାଲିଛନ୍ତି । ତାହା ସାଙ୍ଗରେ ଆଉ ଗୋଟାଏ ଛବି ବରଜୁର ଆଖି ଆଗରେ ଭାସିଗଲା । ଆଉ ଗୋଟାଏ ଶ୍ରେଣୀ ଗୁରି ଘର ତା' ଆଗରେ ଚାଲିଗଲା । ସେ ଶ୍ରେଣୀରେ ଶହ ଶହ ହଜାର ହଜାର ମାଇପେ ମରଦ ପିଲା ବୁଢ଼ା ଚାଲିଛନ୍ତି । ସେ ଶ୍ରେଣୀ ଉପରେ କେତେବେଳେ ଢୋକା, କେତେବେଳେ ବେତ ଆଉ କେତେବେଳେ ଠେଙ୍ଗା ମାଡ଼, ଘୋଡ଼ାର ଟାପୁ, ହାତକଡ଼ି ଅଥବା ବନ୍ଧୁକ ! ବନ୍ଧୁକ ଗୁଳି ଧୂଆଁରେ ସେ ଶ୍ରେଣୀ କେତେ-ବେଳେ ଦେଖା ଯାଉ ନାହିଁ; କେଉଁଠି ତାହାକୁ ଲୁହପଟରେ ଲଟା ପାଚେରି ଉପରେ ପଶି ବାହାରିବାର ସରୁ ଗଳି ମୁହଁରେ ଗୁଳି ଲେଟ ଖାଇ ମାଟି କାମୁଡ଼ି ପଡ଼ିଯିବାକୁ ହେଉଛି; କେଉଁଠି ନଈ ପାରି ହେବାକୁ ଯାଇ ଡଙ୍ଗା ଉପରେ ଗୁଳି ବର୍ଷୁଛି; ଘରଦ୍ୱାର ଜଳି ପାଉଁଶ ହେଉଛି । କେତେ ପିଲା ମାଇପେ ଭେଣ୍ଡା ବୁଢ଼ା ଭୂଇଁରେ ତଳି ପଡ଼ି ସବୁ ଦିନ ପାଇଁ ଆଖି ମୁଦି ଦେଉଛନ୍ତି, ପୁଣି ତାଙ୍କ ଥାନରେ କେତେ ଯାଇ ଛିଡ଼ା ହୋଇ ପଡ଼ି ସେ ଶ୍ରେଣୀ ଚଳାଉଛନ୍ତି, କେହି ପଛକୁ ଚାହିଁବାକୁ ହୁକୁମ ନାହିଁ । ଦୁଃଖ କରିବାକୁ ତର ଅବା ଅଛି କାହାର ?

ହାଣ୍ଡିମଙ୍ଗୁଳା ପାଇଁ ପଲ ପଲ ପିଲା ମାଇପେ ରଙ୍ଗଡ଼ଙ୍ଗିଆ ଲୁଗା ପିନ୍ଧି ଆଗରେ ତାଙ୍କର ଢୋଲ ଶଙ୍ଖମହୁରି ବାଜି ଦାଣ୍ଡ ମଝିରେ ଚାଲିଛନ୍ତି । ବରଜୁ ତାଙ୍କ ଭିତରେ ଏହି ଶ୍ରେଣୀର ସପନ ଦେଖୁଛି । ସେହି ଶ୍ରେଣୀ ଭିତରୁ କିଏ ଯେମିତି ତାକୁ ଡାକି ଘୁଡ଼ୁଛି, "ତୋର ବାହା ଶ୍ରେଣୀ ସେଠାରେ ନୁହେଁ ରେ, ଏହିଠାରେ ! ଚାଲିଆ ବରଜୁ, ଚାଲିଆ !"

ଦେଖିଲ ବା ହୋ'ଉ ବାହା—ଗୌରବର ନାହିଁ କଣ ଯେ ସେ ଭଲ କଥ ଦ'ମୁଠା ଖାଇବାର ଦବ ନାହିଁ । ତାର ଘରଆରେ ବଡ଼ ଜାଲ ପକାଇ ବଡ଼ବଡ଼ ମାଛ ଧରା ହୋଇଥାଏ । ସାରୁ, ଆଳୁ, କଦଳୀ, ଦୁଧ ପାଇଁ ଆଗରୁ ବଇନା ଦଆ ଯାଇଥିଲା । ପୁଣି ବନ୍ଧୁ ବାନ୍ଧବଙ୍କ ଘରୁ ଭାର ଭାର ଦେଇ ସବୁ ଜିନିଷ ଜମା ହେଉଥାଏ । କେଉଁଠୁ କେତେ ଭାର ଆସିଲା, ଖାଉଆମାନେ କଣ ଖାଇବେ, ଢଦାଙ୍କା ଖାଇବେ କେତେ, ସବୁ କଥା ତଦାରଖ କରିବାକୁ ଲୋକ ରହିଛନ୍ତି । ବନ୍ଧୁ ବାନ୍ଧବ ଯେତେ ନେଉତା ହୋଇଥିଲେ, ସମସ୍ତେ ଗୋଟିଏ ଗୋଟିଏ କାମ ଆଦରି ନେଇଛନ୍ତି, ଖିରି ପିଠାରେ ଘର ଦୁଆର ବାସୁଛି ।

ମଙ୍ଗଳ ସକାଳେ ଖାଇବାପାଇଁ ଭାଇ ବନ୍ଧୁ, ବାଜା ବଜନ୍ତ୍ରର, ଗଲ ଅଇଲ ବସାଦ । କିଏ ବସି ପାନ ଖଣ୍ଡୁଚି ତ କିଏ କଦଳୀପତ୍ର ସଜାଉଛି । ପତର ଷଢ଼ ସାରି ଭାତ ଭୁଣ ଲାଗି ଗଲାଣି । ବରଜକୁ ଖୋଜା ପଡ଼ୁଛି, ସେ କାହିଁ ? ଆଜମାନେ କିଏ ଆସିବେ ବୋଲି ଚାଙ୍ଗ ସାତ ଖଣ୍ଡ ପତର ବି ଖାଲି ପଡ଼ିଛି । ପଧାନପଡ଼ାରୁ ଯାହାଙ୍କୁ ଡକା ହୋଇଥିଲା ସମସ୍ତେ ଆସି ତ ବସିଛନ୍ତି । ଆଉ ତା' ହେଲେ ଆସିବେ କିଏ, ବରଜୁ ଗଲା କୁଆଡ଼େ ? ସାରା ଗୋଠାକର ଲୋକେ ହାତ ବୁଲବାକୁ ବୁହିଁ ରହିଛନ୍ତି । ବରଜୁ କଣ କାହାକୁ ଡାକିବାକୁ ଚାହାଁଇଗଲା ? ଏ ତ ଆଉ କିଛି ନୂଆ କେ କହୁ ପୁଛୁ ଟିକିଏ ମଠାନ୍ତ ନବା ! ଜାତିଆଣ ସଭା । ଟିକକ କଥାରେ ଜାତି ଭାଇ ବଗିଡ଼ଗଲେ ସବୁ ଭଣ୍ଡୁର ହୋଇଯିବ ! ବରଜୁ ଜାଣିବା ଶୁଣିବା ଲୋକଟା ହୋଇ ଏ କଣ କଲା । ଲୋକେ ତାକୁ ଖୋଜ ଖୋଜ ଥକିଲେଣି ।

କ୍ଷଣକରେ ମଦଆ ଯାଇ ଦେଖିଲା ହାଟମୁଣ୍ଡ ସୁତାକେନ୍ଦ୍ର ଘରେ ବସି କଂଗ୍ରେସିଆ ବାବୁମାନଙ୍କ ସାଥିରେ ସେ ଗପ ଯୋଡ଼ ଦେଉଛି । କହୁଛି, "ବାଃ, ଆଚ୍ଛା ଲୋକ ତମେ ପଧାନେ । କେତେଣେ ପଡ଼ିଛ ଘରବୁଡ଼ ପାଣି ଆଣୁଏ, ଏଠି ବସି ତମେ ଗପ ମାରୁଚ ।"

ବରଜୁର ମନେ ପଡ଼ିଗଲା । ସତେ ତ ! ସେ ପରା ବାବୁମାନଙ୍କୁ ସଭାକୁ ଡାକି ଆସିଥିଲା । ଭଥାଲବୟସରେ ସବୁ ମତ ପାସୋରି ପକେଇଛି ! ତାକୁ ଖୁବ୍ ଲାଜ ମାଡ଼ିଲା । ବାବୁମାନଙ୍କୁ କହିଲା, "ହଁ, ମୁଁ ଡାକି ଆସିଥିଲି, ଆମ ଗୌରାଙ୍ଗର ମଙ୍ଗଳସଭାକୁ । ସେ କଥା କହିବାକୁ ସାହସ ହେଉ ନ ଥାଏ । ଏଣେ ପୁଣି ଗପ ଆରମ୍ଭ ହେଇଗଲା ।"

"ଏଁ ! ଏତେବେଳଯାଏ ପୁଣି କହୁନ । ଖୁବ ବେପରୁଆ ଲୋକ ତମେ ।" ପଦଆମାମୁଁ ରାଗି ଯାଉଥାଏ ।

ନଣାମଣି କହିଲେ, "ସେ କଥା ଜାଣିଥିଲେ ତ ଆମର ଆଜି ମେଟିଂର ବଳ ହେଇଥାନ୍ତା ।"

"ଆଉ ହବନ, ହବନ । ଏ ଗୋଟିଏ ବରବୁଢ଼ା ହେଲେଣି । ଯୁଆଙ୍କ ଅକଲ ଦେଖ, ବାବୁ; କେବଣ ଖବେ ଲୋକ ବ'ଘଣ୍ଟା ହେଲା ହାତ ଖୁନବାକୁ ବ୍ବୁର୍ଷ୍ଟି ବସିଛନ୍ତି ।"

ମଙ୍ଗଳସଭାରେ ସମସ୍ତେ ମନୋବଧ କରି ମୁଠେ ଲେଖାଏଁ ଖାଇଲେ । ଆଉ ଦିନ ବାହା । ସେ ଦିନ ବ ସ୍ୱାଇବନ୍ଧୁ କୁଟୁମ୍ବଙ୍କୁ ଡାକି ବରଜୁ ଆଜି ବଡ଼ଭେ ଲେଖାଁ ଦେଲା । ବେଷଣୀ ପାଇଁ ଗୌରୀ ଫୁଲ ମେଢ଼, ବାଣ ବାଜା ଖୁବ୍ ଯୋଗାଡ଼ କରିଥାଏ । ବର, ବରଯାତ୍ରୀ, ପାଲିଙ୍କି, ପଲ୍ଲୁକ ସମସ୍ତେ ସଜିଲ ହେଲେଣି ।

ଷାଣ୍ଢ ଯାହା ଅନୁକୂଳ କରିବାକୁ ବାଧ୍ୟ ଅଛି । ତେବେ ଆଜି ବଇଜୁକୁ ଖୋଜିଲା ବେଳକୁ ସେ ନାହିଁ ।

ବଇଜୁ କେଉଁଠି, ନା ଯାଇ ସୂତାକୋଠରେ ! ପଣ୍ଡାମାନଙ୍କ ତା' ଉପରେ ଯେମିତି ଚିଡ଼ିଗଲା, ସେମିତି ତାଙ୍କ ନିଜ ଜୀବନରେ ସେ ଖୁବ କମ୍ ଚିଡ଼ିଥିବ । "ଏ କଣ, ଗୌରୀ ଉପର ଘର ବୋଲି ତା' ବାହାଘର ପାଇଁ ଏତେ ଉଦାସିଆ ହେଉଛନ୍ତି ପିତା !"

ଷଣ୍ଢଆର କଥାଗୁଡ଼ା ବଇଜୁ ଉଠାଇ ବୁଝି ପାରିଲା ନାହିଁ । ତାକୁ ଜଳ ଜଳ ଚାହିଁ ପଚାରିଲା, "ନାହିଁ, ମୁଁ କଣ କଲି କି ?"

"ନାହିଁ, ତମେ ଭଲ କଣ । ତେଣେ ବର ଅନୁକୂଳ କରିବ ବୋଲି ଆଞ୍ଜୁଳାରେ ଗୁଆ ସୁଭଳ ଧରି ଚାହିଁ ବସିଥାଇ । ପୁଣି ଅନୁକୂଳ ଲଗନ ବନି ଯାଉଛି । ଯାଃ, ବଡ଼ ନାଜର ଲୋକ ତମେ, ପଧାନେ ! ନିଜ ପୁଅ ଭଳି କେଇଥିଲେ ଯା ପୁଣି ଭଲନ୍ତ କି !"

ଷଣ୍ଢଆର ଶେଷ କଥାଗୁଡ଼ାକ ତାଆଁ ପରି ବଇଜୁ କାନରେ ଲାଗିଗଲା । ସେ ଉଠି ଆସି ଷଣ୍ଢଆର ଗୋଟାଏ ହାତକୁ ଚାପି ଧରିଲା । ନିଜର ଢେଙ୍ଗା ଢେଙ୍ଗା ଢୋଳା ଯୋଡ଼ାକୁ କଟମଟ କରି କହିଲା, "କଣ କହିଲ ଷଣ୍ଢଆମାନଙ୍କ ? ଗୌରୀ ମୋର ପର ! ନିଜ ପୁଅ ଭଳି ହୋଇଥିଲେ—" ବଇଜୁ ଆଉ କହି ପାରିଲା ନାହିଁ । ତାହାର ଢୋଳା ଦି'ଟାରୁ ବରକୋଳି ପରି ବଡ଼ ବଡ଼ ଲୁହ ଟୋପା ଝର ଝର ହୋଇ ଗଡ଼ି ଆସିଲା ।

ଏବେ କଣ କହିଲା ଯେ, ତଣ୍ଟିରେ ବଇଜୁ ଆଖିରୁ ଲୁହ ଝରିବ । ପଣ୍ଡା ଭାବ ସ୍ୱଭାବ କିଛି ବୁଝି ପାରୁ ନ ଥାଏ । ବଇଜୁ

ଲୋକଟା ଯେ କେବେ ହେଲେ କାଛ ପାରେ ଏକଥା ପଦଆକୁ ଆଜି ଯାଏ କହିଥିଲେ ସେ ତ ଜମାରୁ ବିଶ୍ବାସ ଯାଆନ୍ତା ନାହିଁ । ଏବେ ନିଜ ଆଗରେ ତାକୁ ଏହିପରି ଦେଖି ପଦଆ ଗ୍ଳୁଡରେ କମ୍ପିତ ଗୋଟାଏ ଛନକା ପଶିଗଲା । ପୁଣି ବାବୁମାନେ ତରବରରେ ଉଠି ଆସି ଯେତେବେଳେ ପଚାରିଲେ, "କଣ ହେଲା କି ପଧାନେ ?" ସେତେବେଳକୁ ବରଜୁର ଅଷ୍ଟାଙ୍ଗ ଶରୀର ଥରୁଛି । ସେ ଖାଲି ଓଠ ଥରାଇ କହିଲା, "ପଦଆମାମୁଁ କଦେ ଗୌଷ ମୋର ଚର !"

ବାବୁମାନେ ବୁଝେଇ ସୁଝେଇ ଦେଲେ । ପଦଆ ନିଜ ଦୋଷ ମାନିଲା । "ହଉ, ଘରକୁ ଚାଲ, ସବୁ ଦୋଷ ମୋର ।" ଘରକୁ ଆସୁଁ ଆସୁଁ ବାଟରେ ବରଜୁ ହଠାତ୍ କାହିଁକି ପାଗଳ ପରି ପଦଆକୁ କୁଣ୍ଢେଇ ପକେଇଲା । "ନାଇଁ, ପଦଆମାମୁଁ, ଦୋଷ ତମର ନୁହଁ, ମୋର ।"

ପଦଆ ମୁଣ୍ଡରେ ଏସବୁ କଥା ବୁଝିବାକୁ ବୁଦ୍ଧି ନ ଥାଏ । ଏହୁଣି ତ ସବୁ ଦୋଷ ପଦଆର ହେଉଥିଲା, ସାଙ୍ଗେ ସାଙ୍ଗେ ବରଜୁ ଉତ୍ତରକୁ ଚାଲି ଆସିଲା କମିତ !

ତେବେଣ ଅନୁକୂଳ ବେଳ ଗଡ଼ି ଯାଉଛି, ଏଣେ ବରଜୁର ହାତ ଯୋଡ଼ାକ ଜାପ ପଡ଼ି ଯାଇ ଫିଟୁ ନାହିଁ । ପଦଆ ହତଗ୍ର ବଙ୍କ ଅକଳରେ ପଡ଼ିଗଲା ।

"ମୋ ମନଟା ଏବେ କାହିଁକି ବଡ଼ ଚଞ୍ଚଳ ହେଉ ପଡ଼ୁଚି । କେତେବେଳେ କଣ କରୁଚି ନିଜେ କିଛି ବୁଝିପାରୁ ନାଇଁ । ପଦେ ପଦେ ଭୁଲ ହେଇ ଯାଉଚି । ତମେ ତ ମୋର ଦୋଷ ଧରି ନାହଁ; କହ ପଦଆମାମୁଁ, ନ କହିଲେ ତ ମୁଁ ଛାଡ଼ିବ ନାହିଁ ।"

ବରଜୁର କବଳରୁ ସହଳ ଉଧୁରିବା ପାଇଁ ସେ କହିଲା, "ନାହିଁ ପଧାନେ, ତମର କଣ ଦୋଷ ।" ବାଟ ମଝିରେ ଏମନ୍ତ ଯୋଡ଼ାଏ ଦରବୁଢ଼ା ମଣିଷଙ୍କୁ ଧସ୍ତଧସ୍ତ ହେଇ ଛୁଟା ହେଇଥିବାର କଏ ଯେବେ ଦେଖିବ !

"ନାହିଁ ତ, ସବୁ ମୋର ଦୋଷ ।" କହି ବରଜୁ ତାକୁ ଛାଡ଼ିଲା ନାହିଁ ।

ପଦଆ ଦେଖିଲା, ହାଟତରଫରୁ ସେଇବାଟେ ତିନି ଚାରି ଜଣ ଲୋକ ଆସୁଛନ୍ତି । ବରଜୁ ପଦଆକୁ ନ ଛାଡ଼ିବାର ଦେଖି ସେ ଆଖିବୁଜ ଦେଇ ପାଟି କଲା, "ହଁ ହଁ ତମର ତ ସବୁ ଦୋଷ" ! ଅନେକ ଦିନ ପରେ ପଦଆମାମୁଁଠାରୁ ଏହି ଗପ ଶୁଣି ହସି ହସି ଲୋକଙ୍କର ପେଟ ଫସସ ହେଇ ଯାଇଛି ।

ଆଗରୁ ତ ବରଜୁ କେତେ ବାହାଘର ଦେଖିଛି । ଆଜ କାର୍ତ୍ତିକ ମଶା କାମୁଡ଼ାର ପରେ ତା' ମନ ଭିତରେ କେତେ କଥା ଫୋଡ଼ି ପକାଇଲା । ସେ ଯେ ଗୌଶ୍ବର ମଙ୍ଗଳସଙ୍ଘ କଥା ଏକା କେବେ ଯାସୋକ୍ଷ ଫକେଇ ଆଶ୍ରମରେ ଆସି ବସିଥିଲା, ତା' ନୁହେଁ । ଗୋଟାଏ ଘଟଣାରେ ତାହାର ନଜ ଉପରେ ପୁଣି ଦୁନଆ ଉପରେ ଏମିତି ଏକ ଘୃଣା ଆସିଗଲା ଯେ, ଆଶ୍ରମ ବାବୁମାନଙ୍କ ସାଥିରେ ଟିକଏ କଥାଭାଷା ହେଇ ମନଟାକୁ ଭଶ୍ବାସ କରିବ ବୋଲି ତା'ର ଇଚ୍ଛୁର ହୋଇଗଲା ।

ଘଟଣାଟା ଏମିତି କଛି ବଡ ନୁହେଁ । ସବୁ ଦିନ ଯାହା ସବୁରି ଆଖିରେ ପଡ଼େ । ଘରୁ ବାହାରି ଆସି ସେ ଦେଖିଲା ଗୋଟାଏ ମାଗନ୍ତାଣୀ ପାଟି କରୁ ଗାଁ କମ୍ପାଉଛି । ଭାଇ ବନ୍ଧୁ ଖାଇ ସାରିଲେ ସିନା କଏ ମାଗମାଗୁଣିଙ୍କ ଦଏ ? ତେବେ ମାଇପିଟାକୁ ଯେତେ ଯେ ମନା କଲେ ସେ ତାହାର କଥା ନ ଶୁଣି ପାଟି କରୁଥାଏ, "ମୁଁ ଦି'ଦିନ ହେଲା ଖାଇ ନାହିଁ, ମୋତେ କଣ୍ଟା'ଏ ଦିଅ ।"

ବାହାଘର ଗୋଳମାଳ ଭିତରେ ବରଜୁ ମନଟା ଟିକଏ ଚଗିଡ ଧରି ଯାଇଥାଏ । ବାଣ୍ଡ୍ର ଷାହାଡକୁ ଉହ୍ଲାଇ ଆସୁଁ ଆସୁଁ ଏନ୍ତ ମାଇପିଟାକୁ ସେ ହାତରେ ଟିକଏ ଆଡେଇଦେଲା । ବରଜୁ ତାକୁ ଛୁଇଁଛି କି ନାହିଁ ମାଇପିଟା ତଳେ ପଡ଼ିଗଲା ଖଣ୍ଡେ ଶୁଖିଲା ଡାଙ୍ଗ ପରି ! ଅତ ଅଳ୍ପରେ ମାଇପିଟା ପଡ଼ିଯିବ ବୋଲି ସେ ଭାବି ନ ଥିଲା । ପୁଣି ସେଇ ମୁହୂର୍ତ୍ତରେ ତାର ହାତଟାକୁ ଉଠାଇ ଯେତେବେଳେ ସେ ଠିଆ କରେଇଲା, ଦେଖିଲା ସେ ତ ମଣିଷ ନୁହଁ, ମଣିଷର ଗୋଟାଇ ଗୁଳ ! ସେଇ ଓ ଘୃଣାରେ ତାର ତାକୁରୁ ଚଳପାଯାକେ

ଅନୁଥାଏ । ପଶୁବଳି, ସତ କହ, ତୁ ଜାଳଠୁଁ ଖାଇ ନାହୁଁ ? ମାଇପିଠା ସବୁ ଲାଜ ସରମ ଗୁଡ଼ ପିନ୍ଧିଥିବା ଛୁଣ୍ଡ୍ରାଇନା ଛଟେଳ ପେଟଟେ ହାତ ମାରି କହିଲ, "ଦେଖୁନ, ମୁଁ ଯେବେ ମିଛ କହୁଥେବ ଟମା ଗୁଣ୍ଡ ଫାଟିଯିବ ।"

ଯେଉଁ ଲୋକ ଜ'ପନ ଦେଲ ଖାଇ ନାହିଁ ବୋଲି ନଜ ମୁହଁରେ କହୁଚ, ଯାହାର ଚେହେରା ଦେଖି ମନେ ହୁଏ ନାହିଁ, ସେ ଜନ୍ମରୁ କେବେ ହେଲେ ଖାଇଛି, ବରଜୁ ତାଉ କଥାରେ ମୁଣି ସନ୍ଦେହ କଲ ପଶୁବଳି ! ଛେବେ ସେ କେଉଁ ନେଇ ନ ଖାଇ ଦୁଇ ସୁର ତନ ଭଣ୍ଡ ବୋଲି ଧମା ବଡ଼ ଲୋକେ ବିଶ୍ୱାସ କରି ପାରନ୍ତି ନାହିଁ ସେଥିରେ ତାଙ୍କର ଭୁଲ କେଉଁଠି !

ଖୁବ୍ ଆଡ଼ମ୍ବରରେ ବାହାଘର ଶେଷଣୀ ଖୁଲିଲ । ବାଜା ବତୁଡ଼ ଫୁଲ ଫାନ୍ସ ଛଡ଼ା ଦୁଇ ଖ୍ବଟା ଗେସ୍ ଆଲୁଅ ବି ଯୋଗାଡ଼ ହୋଇଥାଏ । ବରବେଶ ପିନ୍ଧି କପାଳରେ ଚନ୍ଦନଫାଟି ଲଗାଇ ଗୌରବରୁ ପାଲିଙ୍କିରେ ବସିଥିବାର ହରସୁଭ ଗାଁର ଝିଅ ବୋହୂମାନେ ଆଖିର ଅଡେଇ ବେଖିଲେ । ପାଲିଙ୍କି ଆଗରେ ପଇସା କଉଡ଼ି ଢାଆ ଖୁଲିଥାଏ । ଢୋଲ ଖୁଙ୍ଗୁର ଠୁ ଠୁ ଚଡ଼ଚଡ଼ ଭିତରେ ଚେଲିଙ୍ଗି ବାଜାର ମଧୁର ସୁର ମଧୁ ପରି କାନକୁ ମିଠା ଲାଗୁଥାଏ, "ତେଣ ମଲୁସ ସୁର୍ଣ୍ଣ ଜଣି ନାଶେ ଯାଶେ ନାହିଁ ତବ୍ୟ ଭଙ୍ଗୁର" । ତା' ମଝିରେ ଗୋଟାଏ ଲେଖାଁ ଫୁଲ ଝର, ଚମ୍ପା, ଆକାଶମଲ୍ଲୀ ଶେଷଣୀଟାକୁ ଆହୁରି ଜମେଇ ଦେଉଥାଏ ।

ବରଜୁ ଏଇ ଶେଷଣୀ ପଛରେ ଖୁଲିଛୁ ବରକର୍ତ୍ତା ହେଇ । ଛେବେ ତା' ଅଖିକ କହୁ ଭଲ ଦେଖାଯାଉ ନାହିଁ । ହଃ, ମାଇପିଠା

ପଡ଼ିଗଲା ତ ହେଲା କଣ ? ନିତି ତ ଏମିତି କେତେ ଲୋକ ପଡ଼ୁଛନ୍ତି, ଉଠୁଛନ୍ତି । ଦୁନିଆଁରେ ସେଥିରେ କା କଣ ଯାଏ ଆସେ ? ଏଇ କଥା ଭାବି ଭାବି ମୁହଁ ଶୁଖାଇ ପେଣ୍ଟ ଭଳି ବସି ରହିଲେ ତ ଚଳିବ ନାହିଁ । କିଏ କାହା କଥା ଭାବେ, କିଏ କାହା କଥା ଶୁଣେ ! ଯେଉଁ କଥା ନସ ତ କର ଭୁଲି ଯାଉଚ । ବରଜୁର ଏତେ ଭାବନା ପଡ଼ୁଛି କିଆଁ ?

× × × ×

ବାପ ଘର ଶ୍ରେଷଣୀ ସାଥିରେ ବରଜୁ ଚାଲିଛି । ତାହାର ମନେ ପଡ଼ିଲା, ବାପ ମା ଥିଲାବେଳେ ସେ ବଡ଼ ପୁଅ ବୋଲି ଗାଁରେ ମଡ଼ା ଜାଳିବାକୁ ଯାଏ ନାହିଁ । ବାପ ଗ୍ରାମ ପ୍ରଧାନ ନିଜେ ଦମ୍ଭ ଥିବା ଯାକେ ଯାଉଥିଲା । ତା'ପରେ ଛକଡ଼ର ପଡ଼ିଲା ପାଳି । ବାପ ମାଙ୍କ ଅନ୍ତେ ବରଜୁ କେତେଥର କୁଟୁମ୍ବ ଭିତରେ କେତେ ମରିଗଲେ ମାଲି ଭାଇ ହୋଇ ଯାଇଛି । ଯାହା ଘରେ ମଡ଼ା ତା' ଘରେ ପିଲା କାନ୍ଦ ବୋବାଳି, ମାଲିଭାଇଙ୍କ ମନରେ କାହିଁ ସେ ତ ଟିକିଏ ଦୁଃଖ ଦେଖି ନାହିଁ । ସେ ନିଜେ ବି ମଲା ମଣିଷର କଥା ଥରେ ଦି'ଥର ମନେ ପକାଇ ଦେଇ ତାହାପରେ କେମିତି କେ'କେଇ ବନ୍ଧା ହେବ, ଯୁକ୍ତିଗାତ ଖୋଳାଯିବ, ସେଇ କାମରେ ଲାଗିପଡ଼େ । ମଣିଷର ଦୁଃଖ ସୁଖ ତେବେ କଣ ଖାଲି ନିଜ ପାଇଁ, ଆଉ କାହାରି ପାଇଁ ନୁହେଁ ? ନା, ନା, କଦାପି ହୋଇ ନ ପାରେ । ଦୁନିଆର ନିୟମ ତାହା ତ ନୁହେଁ, ଏକା ମଣିଷ ବେଳକୁ ହେବ କାହିଁକି ? ଉପରେ ତ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ସବୁରି ଗତି ଏକା ରକମର । ତଳେ ତ ଆଉ ଜୀବଜନ୍ତୁ କଥା ଛାଡ଼, ଜନ୍ଦା ପିମ୍ପୁଡ଼ି ହଜାର ହଜାର ଏକା ଗୋଠରେ, ଏକା ଧାଡ଼ିରେ, ଏକା ବାଟରେ

ଝୁଲୁଛନ୍ତି । ମଣିଷବେଳକୁ ସେ ବୁଝିଆ ଜାଣିନ ? ତା' ନିଜ ଦୁଃଖ ସୁଖ ଏକା ତାଙ୍କ ଆପଣାର ହେବ କେମନ୍ତ ! ନା, ନା, ନା, କେବେ ତ ମଣିଷ ଜଙ୍ଗଲ ଭିତରେ ରହନ୍ତି । ଗାଁ ବସ୍ତି ଛାଡ଼ି ରହୁଛ କାହିଁକି ? ନା ବରଜୁ, ତୋତେ ହସିବାକୁ ହେଲେ ତୋ ସାଥିରେ ଆମ୍ଭମାନେ ହସିବା ଲୋଡ଼ା, ପୁଣି ଆମ୍ଭମାନେ କାନ୍ଦିଲେ ତୋ ହୃଦ ନ ତରଳି ରହିବ କିପରି !

ବେଷଣୀ ଭିତରେ ପଣ୍ଡାଆମାନେ ମଝିରେ ମଝିରେ ମୁଠାଏ ଲେଖାଁ କଉଡ଼ି କି ଅଧଲା ପାଉଲା ଫିଙ୍ଗିଦିଏ । ବାଜା ବନ୍ଦ କରି ସମସ୍ତେ ତାହା ଗୋଟାଇବାରେ ଲାଗନ୍ତି । ବରଜୁର ଭାବନା ସୂତ୍ର ଛିଣ୍ଡିଏ ଅଟକିଯାଏ । ପୁଣି ବାଜା ଆରମ୍ଭ ହେଲେ ସ୍ମୃତେ । ଜଗନ୍ନାଥ ଗାଁ ମୁଣ୍ଡରେ ମଣ୍ଡପସ୍ଥଳ ବେଳକୁ ବେଷଣୀ ଖୁବ୍ ଜମାଟ ହୋଇ ଉଠିଲା । ସେଇଠି ଲାଗିଲା ବେଣି ଫୁଲଝରି ଆକାଶମଲ୍ଲୀ । ସେତେବେଳକୁ ରାତି ଅଧ । ସାନ ପିଲା ଗୁଡ଼ା ବି ଶେଯରୁ ଉଠି ଆସି ଅଧାନିଦିଆ ହୋଇ ଆଖି ମଳି ମଳି ବେଷଣୀ ଦେଖିଲେ । ଆଉ କେତେ ପିଲାଙ୍କୁ ତାଙ୍କ ମାବାପମାନେ ବି ଅତି ସ୍ନେହରେ ନିଦରୁ ଉଠାଇ ବେଷଣୀ ଦେଖାଇଲେ ।

ବାଟବଢ଼ାଣ ହେଲା, ଶିଳଲୋଢ଼ା ହାତଗଣ୍ଠି ହେଲା କି ସଙ୍ଖୁଡ଼ି ସଭା ହେଲା, ବରପକ୍ଷ କନ୍ୟାପକ୍ଷ ଭିତରେ ଯେତେବେଳେ ବା ଟିକିଏ ଠଣାଠଣି ଆରମ୍ଭ ହୋଇଯାଏ ବରଜୁ ସେଠାକୁ ଯାଇ କଜିଆ ମେଣ୍ଟାଇଦିଏ । ଶିଳ ଲୋଢ଼ା ବେଳକୁ ଦି' ପକ୍ଷ ଭିତରେ ହାତ ଉଠା ଉଠି ହୋଇ କୁଆଡ଼େ ମାରପିଟ ହୋଇ ପଡ଼ିଥାନ୍ତା । କିନ୍ତୁ ଯେବେ ଶିଳ ଉପରେ ଗାଧୋଇ ସାରି ଶିଳାଟାକୁ

ଲେଉଟାଇ ଦେବ ତେବେ ସେ ତା'ର ସାତ ପୁରୁଷ କନ୍ୟା ସାତ ପୁରୁଷର ଉପରେ ଉଣ୍ଡପିବେ । କନ୍ୟାପକ୍ଷ ଏ କଥା ଜରେଇ ତେବେ କାହିଁକି ! ସାହାଡେଇ ବନ୍ଦୁ ସେଠାରେ କଳଣ୍ଟାକୁ ମେଣ୍ଟେଇ ଦେଲା । ସେ ମୂଳରୁ ଖିଲ ଲେଉଟାଇବାକୁ ଦେଲା ନାହିଁ ।

ବନ୍ଧୁ ବାନ୍ଧବଙ୍କ ଘରୁ ନୋଟିଆ ଖୁଲୁଆମାନେ ଯେ ଯେମିତି ଜିନିଷ ଆଣିଥିଲେ ତାଙ୍କୁ ସ୍ୱର୍ଣ୍ଣ ବଦାଣା ପାଇଲେ । କିଏ ବା ଦୂର ବାଟକୁ ଯିବେ ବୋଲି କିଛି ଜଳଖିଆ ସାମଗ୍ରୀ ଗାମୁଛାରେ ବାନ୍ଧି ଘରକୁ ନେଇଗଲେ । ଝିଅ ଝିଆଣିଆ ଆନନ୍ଦରେ ଦଶ ବାର ଥର ଲମ୍ଫିଲେ ।

ସବୁରି ମୁହଁରୁ ଶୁଣାଗଲା ବୋହୂଟି ଉତ୍ତମ ସୁନ୍ଦର । ସାଇ-ପଡ଼ିଶା, କୁଟୁମ୍ବଘର ମାଇପେ କିଏ ନଡ଼ିଆ ଜଡ଼ାଏ, କିଏ ବା ପଇସା ଅଣାଏ, ବୋହୂ ହାତରେ ଗୁଞ୍ଜି ତାହାର ଓଢ଼ଣା ଟେକି ମୁହଁ ଦେଖିଲେ । ହାସ୍ତବୋଉ ମାଗମାଗୁଣିଙ୍କୁ ଉଖୁଡ଼ା ଆରିସା ପିଠା ବାଣ୍ଟ ବାଠଉଁ କେତେବେଳେ ହାସ୍ ପୁଅକୁ ଦୁଧ ପିଆଉଛି, ସୁନା ପଲ୍ୱରଲାଣି ପାନଆଟ କେଉଁଠି ରହିଲା ବୋହୂର ମୁଣ୍ଡ ବନ୍ଧାହେବ; ଗୌରୀ ପଲ୍ଲବଲାଣି ନେଡମଣି ପାଇଁ କମିତ ଶାଢ଼ୀ ଯିବ, କାହିଁରେ ତାଙ୍କୁ ତର ନାହିଁ ।

ସାତମଙ୍ଗୁଳା ଯାକେ ଗୌରୀଙ୍କ ଦେହରୁ ପାଞ୍ଚ ହଳଦୀ, ପାଦରୁ ଅଳତା, ଆଖିରୁ କଜଳ, ବାହାରୁ ଦୂବ ବରକୋଳି ପତ୍ର ଗଲ ନାହିଁ । ଏ ବୟସରେ ଏମିତି ବରବେଶ ସାଜହେବାକୁ ତାଙ୍କୁ ଖୁସି ଲାଗୁ ନ ଥାଏ । କେତେବେଳେ ଟିକିଏ ସେ ଗୁଁ ପୁଁ ହେଲେ ହାସ୍ତବୋଉ କୋବଲେଇ କହେ, "କାଲିକା ପିଲାଟା, ଲାଜ କଣ ମାଉଚିମ ଛମକୁ !" ଭୁନହେଇ ସେ କାହାଘର ଝିଅଟିକ ପାଲଲା । ସତେ ମାଇପଙ୍କ ଭିତରେ କାହାକୁ ଅବା ସେ କଣ କହନ୍ତା ?

ତେବେ ବାଣ୍ଡ୍ରକୁ ବାହାରିଲେ ତାଙ୍କୁ ବଡ଼ ଅଡୁଆ ଲାଗେ । ସାଙ୍ଗ ସାଥିମାନେ ଟାହି ଟାପର କରନ୍ତି । ଏକୁଟିଆ ବେଳେ ମନେ ପଡ଼ିଯାଏ ତିନ ବର୍ଷ ତଳର କଥା । ଏହି ଘର ତିନ ବର୍ଷ ତଳେ ଗୋଟାଏ ରୂପ

ଧରିଥିଲା, ଆଜ ଆଜ ଗୋଟାଏ ସ୍ତୂପ ! ତାହାର ସାଙ୍ଗ ସ୍ମରଇ ଚୈତନ୍ୟ ଚେଉରବର୍ଷର ପୂଷ୍ପ ମାଧବ—ପିଲା ମାଇପଙ୍କ ଗହଳରେ ଏନ୍ତୁ ଘର ଏମିତି ଦଣେ କମ୍ପୁଥିଲା !

ବର୍ଷକ ଆଗେ, ଦୁ'ବର୍ଷ ଆଗେ, ତିନ ବର୍ଷ ଆଗେ ସବୁକଥା ମନ ଭିତରେ ଯେମିତି ଚେଇଁଥିଲା, ଏଣିକି ଏଣିକି ସବୁ ଘୁଇଘୁଇଆ ହୋଇ ପଡ଼ିଲାଣି । ଆଗଠାରୁ ମନଟା କେତେ ଉଶ୍ୱାସ ଧରିଲାଣି । କେଜାଣି କମିତି ମଣିଷ ଅଙ୍ଗେ ନଭେଇବା କଥାଗୁଡ଼ା ବି ପାସୋରି ପକାଇ ପାରେ । ତାକୁ ଲାଗୁଥାଏ ଯେମିତି କ ସେ ରେଲଗାଡ଼ି ଭଳି ଧାଇଁଛି । କେତେ ଦୂରର ଗଛଲତା ବିଲଘାଟଡ଼ି କ୍ଷଣକେ ପାଖକୁ ଆସି ଆଉ କ୍ଷଣରେ କେତେ ପଛରେ ପଡ଼ି ଗଲାଣି ଯାହା ସ୍ମୃତିଗଲା ବେଳେ ବଡ଼ଦୁ ଖଣ୍ଡେ ଛୁଟିଗଲା ପରି ଲାଗୁଥିଲା, ସେ ଆଜ ମନରୁ ସୁଦ୍ଧା ପାସୋରି ଯାଉଛି !

ଦାଣ୍ଡ ପିଣ୍ଡାରେ ବସି ଏମନ୍ତ କେତେ ଆଉ୍ କେତେ କଥା ଧାନ ବଳରେ ଖୋଦୁଆ ମାସର ଚଲା ବଉଦର ସୁରି ଭଳି ତା ମନ ଉପରେ ଉଠି ଉଭେଇ ଯାଉଥିଲା । କେତେ ମୂହଁ ଦେଖା ଦେଇ ନଭି ଯାଉଥିଲା । କାହାଡ଼ାକରେ ତାର ପୁଣି ଚେତା ପଶିଲା—"ପ୍ରଧାନେ କଣ ଘରେ ନାହାନ୍ତି କି ?"

ଗୌର ଦେଖିଲା ଦାଣ୍ଡ ମଝିରେ ଜସ୍ୱବାବୁ । ଡାକିଲା, "ଆସନ୍ତୁ ବାବୁ । ସେ କେଉଁଠି ଥିବେ ମୁଁ ଡାକି ଆଣୁଚି ।"

ପିଣ୍ଡା ଉପରକୁ ଉଠି ଜସ୍ୱକୃଷ୍ଣ ଟିକଏ ମୁରୁକି ହସି ପଚାରିଲେ, "କଣ ଏବେ, କାହାଘର ତ ସଜଗଲା ?"

"ନ ବାହାଘର ଆଜ୍ଞା, ଚିର୍ ଲୁଗାରେ ତାଳି ପକାଇବା କଥା । ପୋଷାକଗଲ ଭୂଷଣରେ ସୁସ୍ୱାଦ ଖୋଜିଲେ ଆଉ ଦେଲ କିଏ । ଖାଲି ଖାଇ ଖାଉଜଙ୍କ ଉପରକୁ ବଳି ପିନା ।"

"ଆରେ ଗୌର ମାଠିଆ କଣ ସବୁ ଭାଙ୍ଗି ଯାଇଛି ? ହ'ଟା ନୂଆ ମାଠିଆ କାଢ଼ିବେ । ପାଣି ଆସିଲେ ରନ୍ଧା ହବ ।" ଘର ଭିତରୁ ବାହାରି ପଡ଼ି ବରଜର ନଜରପଡ଼ିଲା ଜୟବାବୁଙ୍କ ଉପରେ "ଆପଣ କେତେବେଳେ ?"

"ଏଇ ତ ଆସୁଛି । ତମ ସାଙ୍ଗରେ କେତେ ଦିନୁଁ ଦେଖା ଦର୍ଶନ ନାହିଁ । ବାହାଘର ଧନ୍ଦାରେ ତ ଖାଲି ଲାଗି ରହିଛ ।"

"ନାହିଁ, ବାହାଘର ଧନ୍ଦା କଣ ? ତେବେ କେତେଗୁଡ଼ାଏ କଥା ନ ଦେଖିଲେ ତ ନ ଚଳେ । ବନ୍ଧୁ ବାନ୍ଧବ ଏଇ କେତେ-ବେଳେ ଖଡ଼ା ହେବେ, କାହାକୁ କଣ ଦିଆଯିବ । ସେଥିରେ ପୁଣି ଭୁଲୁକୁ କେତେ ମାନ ଅଭିମାନ । ତେବେ କଣ କି. ଗାଈକ ମାଇଲେ ମଲି, ଷାଣ୍ଢ ମାଇଲେ ମଲି, ଏମିତି ଅବସ୍ଥା । ଜଞ୍ଜାଳ ନ ଥାଇ ମନବେସ୍ତ, ଥାଇଁ ତ ଜାଣିକରି । ହଉ, ଆଜି ଖବର କଣ କହନ୍ତୁ, ବାବୁ ।"

"ଖବରତ ତ ଖାଲି ଗୁଜୁବର ପଧାନେ । ଗାନ୍ଧିଜୀ ଏଥର ଗୋଟାଏ ବଡ଼ ଅନଶନ କରୁଛନ୍ତି ।" ଜୟକୃଷ୍ଣଙ୍କ ମୁହଁ ବଡ଼ ଗମ୍ଭୀର ।

ଯେଉଁ ସମୟରେ ଜୟକୃଷ୍ଣ ବରଜୁକୁ ଖବରଟା ଦେଲେ ସେତେବେଳେ ଗାନ୍ଧିଜୀଙ୍କ ଅନଶନ ବୋଇଲେ ଦେଶ ଗୋଟା-କର ରଜମାଣ୍ଡ ଚମକ ଉଠୁଥିଲା । ମନେ ହେଉଥିଲା ଗାନ୍ଧିଜୀଙ୍କ

ଉପାସିଆ ଖାଲି ପେଟରେ ଦେଶର ରାଜନୀତି-ମଥାଟା ଲୁଚିଗଲା ପରି । ସତେ କି ଭାରତର ତିନି ଲକ୍ଷ ଲୋକ ଉପାସ କରୁଛନ୍ତି । କେତେଜଣ ଉତ୍କଟ ଗାନ୍ଧିବାଦୀ ମଧ୍ୟ ତାଙ୍କ ମନା ନ ମାନି ସହାନୁଭୂତିରେ ଉପାସ କରି ବସିଲେ । ଆଜି କୁଆଡ଼େ ଖବର ଯାହା ହେଉ—ନାଥବାବୁଙ୍କ ଭଳି ଲୋକମାନେ ମଣିଷ କୁଆଡ଼େ ତିନିଦିନ କାଳ ଖାଲି ଉପାସ ରହି କାଲି ଉପରଓଳି ବନ୍ଧୁମାନଙ୍କ କଥାରେ ଉପାସ ଭାଙ୍ଗିଛନ୍ତି !

ବଡଲାଟ ଘର ଭିତରେ ହାକିମବୋଉ ଉପରେ ଜିଦ୍ ଧରି ଏଭଳି ଭୂଷା ଉପାସ କେତେ ଥର କରିଚି । ସେଥିରେ ଯେ କିଛି ଫଳ ନ ହୋଇଚି ତା ନୁହେଁ । ତେବେ ହାକିମବୋଉଙ୍କୁ ଉପାସ ଧମକ ଦେଖାଇ ସେ ଯାହା କରି ପାରିଥିଲା, ହରିମିଶ୍ରଙ୍କୁ ସେମିତି ଧମକରେ ଯେ ବଦଳେଇ ପାରିବନି । ଏଥିପାଇଁ ଭାରି ସନ୍ଦେହ ହୁଏ । ପୁଣି ସେଇଁ ସବୁ ଗାଁ ଗଣ୍ଡାରେ ସେ ଚଳବିଚଳ ହୁଏ ସେଠାରେ ନିତି ତା'ଆଗରେ ଲୋକ ଉପାସର କେତେ ଘଟଣା ଆସି ପଡ଼ନ୍ତି । ତା'ର ଅନୁମାନ ହୁଏ, ଗାନ୍ଧିଜୀଙ୍କ ଭଳି କୋଟିଏ ଖାଇବାକୁ ପାଉଥିବା ଲୋକ ବର୍ଷକରୁ ଛ'ମାସ ଉପାସ କଲେ ବି ଭାରତର ବଳକା ଆହାରରେ ଦେଶର ଭୋକିଲା ପେଟ ତ ପୂରିବ ନାହିଁ ।

ସେ ଯେ ନିଜେ ମେହେନତ କରି ପେଟ ପୋଷେ, ହେଲେ ତା' ପିଲାଙ୍କ ଲାଗି ଦୁଧ ଟିକିଏ ଯୋଗେଇ ପାରୁ ନାହିଁ, ବରଂ ତାହା ଦଣ୍ଡିକ ପାଇଁ ଉପୋସ ପଡ଼ାଏ । ଗାନ୍ଧିଜୀ ଦୁଃଖୀ ଗରିବଙ୍କ ପାଇଁ ଏତେ ଭାବୁଛନ୍ତି । ଭକ୍ତିରେ ତା' ମନ ପୂରି ଉଠେ । ଛାତି କୁଣ୍ଡେ ମୋଟ ହୋଇଯାଏ । ଘରକଳି ନେଇ ତ ଲୋକେ ମାତିଛନ୍ତି, କୋଟି କୋଟି ଲୋକଙ୍କ ପକ୍ଷ ଧରି କଜିଆ କରିବାକୁ କେତେ ଜଣ ତିଆରି ?

ଅନଶନ ଖବରଟା ବଇଜୁ ଭୁମ୍ବା ହୋଇ ଜମ୍ବୁବାବୁଙ୍କଠାରୁ ଭଲ କରି ଶୁଣିଲା । ମଫସଲଗାଁରେ ପ୍ରତି ଦିନ ଖବର ମିଳୁଚି କୁଆଡ଼ୁ ? ତେବେ ଆଠ ଦିନ ଅନ୍ତର ଯାହା ଖବର ମିଳେ, ଲୋକ-ମୁହଁରେ ତାହା କେତେ ରୂପ ଧରି ଏଗାଁରୁ ସେ ଗାଁକୁ ବ୍ୟାପିଯାଏ । ଗାଁ ଭିତରୁ ବି କେତେ ନୂଆ ନୂଆ ଖବର ବାହାରେ । ଏଥର ଘଟଣାଟା ଦେଖି ବଇଜୁର ତ ଏକାବେଳେ ତାଟକା ହୋଇଗଲା । ତିନ ଦିନ ହେଲା କୁଆଡ଼େ ଗୌରାଙ୍ଗର ବାରିଗାଡ଼ିଆ ମଝିରୁ ପାଣି ଭୁରି ଉଠିଲା । ସେଥିରେ କଏ ଗୁରୁଆଡ଼େ ହଲା କରି ଦେଲା, ପୋଖରୀ ଭିତରୁ ଗାନ୍ଧିଠାକୁର ଉଦେ ହେଲେଣି ! ହୁହୁଁ ହୁହୁଁ କେତେ ସଙ୍କୀର୍ତ୍ତନ ଦଳ ଆସି ପୋଖରୀ ହୁଡ଼ାରେ ଜମା ହୋଇଗଲେ । ଝାଞ୍ଜ ମୃଦଙ୍ଗରେ ଗାଁ ଗୋଟାକ ଉଚ୍ଛୁଳି ପଡ଼ିଲା । ଗୁଡ଼ିଆମାନେ ଅମୃତିଆ ଭୋଗ ଦୋକାନ ଆଣି ପସରା ଫିଟାଇଦେଲେ ।

ବଇଜୁ ସେତେବେଳେ ସବୁ ଦେଖି ଭୁନ ରହିଲା । କେଜାଣି ଅବା ତାହା ଭିତରେ କିଛି ଥିବ । ନ ହେଲେ ଏତେ ଲୋକ ଜମା ହୁଅନ୍ତେ କାହିଁକି ! ପୁଣି ନାଥବାବୁ ନିଜେ ରହି ମଧ୍ୟ ଲୋକଙ୍କୁ ତ ଏଥିରେ ମତାଉଥାନ୍ତି । ବଇଜୁ କଣ ତାଙ୍କଠାରୁ ବେଶି ଜାଣିବାର ?

ଏଥର ମହାତ୍ମାଙ୍କ ଉପବାସ ଖବର ବାହାରିବା ସଙ୍ଗେ ସଙ୍ଗେ ଆଉ ବି କେତେ ଲୋକ ଉପବାସ କଲେ । ନାଥବାବୁ ତିନ ଦିନ ତିନ ରାତି ଉପାସ ରହିଲେ । ଜଣେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ନଣାମଣି ବାବୁ ନାଥବାବୁଙ୍କ ଉପାସକୁ ଖୁବ୍ ତାରିଫ୍ କରି ସେ ଦିନ ବଇଜୁକୁ କହିଲେ, "ନାଥବାବୁଙ୍କୁ କମ୍ ବୋଲି ଭାବିବ ନାହିଁ, ପଧାନେ । ହରିପୁର ପାଟଣାର ତିନହଜାର ଲୋକଙ୍କ ଭିତରେ ସେ ଜଣେ ମଣିଷ ।" ତାହାପରେ ମହାତ୍ମା ଶବ୍ଦ ସଙ୍ଗେ ଗୋଟିଏ ଜୀ ଶବ୍ଦ ଲଗାଇ

ସେ କହିଲେ, "ମହାତ୍ମାଜୀଙ୍କ କଥା ଛାଡ଼ । ଆମେ ତ ଗୋଟିଏ ଦିନ ଉପାସ କଲେ କି ଏକାଦଶୀ କଲେ ପାଳିଆ ହୋଇ ପଡ଼ୁଥାଉଁ । ଦିନେ ନୁହେଁ, ଦି'ଦିନ ନୁହେଁ, ଲଗେ ଲଗେ ତିନି ଦିନ ! ସେତ ବାରଟା ବେଳକୁ ଖାଲି ସିନା ଟିକିଏ ମିଶ୍ରି ପଣା ପାହା ପିଉଥିଲେ !"

ବରଜୁ ବଚେର ଏ ପର୍ଯ୍ୟନ୍ତ ବୁଦ୍ଧିପାରି ନ ଥିଲା ସେ ଉପାସ କଲେ ସତ ବାରଟାବେଳେ ମିଶ୍ରି ପଣା ଟିକିଏ ପିଇବା ଦରକାର । ସେ ଲୋକାଙ୍କ ଭଳି ପଚାରିଲା, "ଖାଲି ଉପାସରେ କଣ ମିଶ୍ରି ପଣା ପିଅନ୍ତି ? ଆମର ଜାଗର କି ଶ୍ରୀ ପଞ୍ଚମୀ ଉପାସରେ ବଳଛଟାଏ ଭଲ ଖିଆପିଆ ହୁଏ । ଏହା କଣ ସେତେ ତାହାଠାରୁ ଟିକିଏ ଉଚ୍ଚ ମାନ୍ଦିଆର ଉପାସ ?"

× × × ×

ଅର୍ଜୁନବାବୁଙ୍କୁ ଦିନେ ଏକୁଟିଆ ପାଇ ସେ ପଚାରିଲା, "ଗାନ୍ଧିଜୀ କଣ ଉପାସ ବେଳେ ଭୋଜନ କରନ୍ତି ?"

"କମତ ଲୋକାଙ୍କ ଭଳି ପଚାର କହେ ପଧାନେ !" ଅର୍ଜୁନବାବୁ ଉତ୍ତର କଲେ, "ରାଜନୀତିକ ଉପାସ ଆଉ ଧର୍ମ ଉପାସ ଭିତରେ ବହୁତ ଫରକ । ଧର୍ମ ଉପାସ ବର୍ଷ ଭିତରେ ଧରାବନ୍ଧା ଗୋଟାଏ ଦିନରେ ବା ସମୟରେ କରାହୁଏ । ଆମର ଏକାଦଶୀ କି ମୁସଲମାନମାନଙ୍କର ରମଜାନ ଭଳି ରାଜନୀତିକ ଉପାସ କରାଯାଏ ନାହିଁ । କରାଯାଏ ରାଜନୀତିର ଠିକ୍ ବେଳକାଳ ଭିତ୍ତି କାମ ହାସଲ ସକାଶେ । ସେ ସବୁ ଉପାସର ସେଥିପାଇଁ ଗୋଟାଏ ଟେକ୍‌ନିକ୍ ଅଛି ।" ବରଜୁ ଟେକ୍‌ନିକ୍ ଶବ୍ଦଟା କେଉଁ ଭାଷାରୁ ଆସିଛି ମୋଟେ ଧରି ପାରିଲା ନାହିଁ । ଅର୍ଜୁନ କହିଲେ, "ଖବର କାଗଜ ପଢ଼, ଜାଣିବ; ଗାନ୍ଧିଜୀ ଉପାସ କଲେ କେତେବେଳେ

କମଳା ଲେମ୍ବୁ କ ଅନ୍ୟ ପ୍ରକାର ରସ ଖାନ୍ତି ! ବଡ଼ ବଡ଼ ଡାକ୍ତରମାନେ ସବୁବେଳେ ପାଖରେ ଜଗି ରହନ୍ତି । ତାଙ୍କ ସାଙ୍ଗେ ଆମେ ଯେତେ ଉପାସ କରୁଁ, ଔଷଧ ସାଥିରେ ଦଣ୍ଡଭୁଆ ବାଇ ହେଉଥିଲା ହେବ ସିନା ! ସେଥିପାଇଁ ସେ ମନା କରନ୍ତି, ଆଉ କାହାକୁ ସହାନୁଭୂତି ଉପାସ କରିବା ପାଇଁ । ଆମ ନାଥବାବୁ ସିନା କଲେ—।" ବରଜୁ ତାଙ୍କ କଥା ଉପହାସ କଲାଭଳି ଲାଗେ । ପୁଣି ନାଥବାବୁଙ୍କୁ କାର୍ତ୍ତିକ କେଜାଣି ସେ ବେଳେ ବେଳେ ସହି ପାରନ୍ତି ନାହିଁ । ଅର୍ଜୁନବାବୁ ସହରିଆ ଲୋକ ପରା !

ଗାନ୍ଧିଜୀଙ୍କ ଉପାସରେ ସତେ ଗୋଟାଏ ଖାଲି ରାଜନୀତି ପେଞ୍ଚ ଥିଲାପରି ବରଜୁକୁ ଲାଗେ ନାହିଁ । ପୁଣି, ତାଙ୍କ ଦେଖାଦେଖି ଆଉ ଯେତେ ଯେ ଉପାସ କଲେ ତାହା କଦାପି ଦେଖେଇବା ପାଇଁ ନୁହେଁ । ଦେଖେଇବା ପାଇଁ କଣ ଏଡ଼େ ବଡ଼ ଦେଶଟାର ସବୁ ଗାଁ ଗଣ୍ଡା ଅନ୍ଧସନ୍ଧରେ ଏମିତି ଚହଳ ପଡ଼ିଯାନ୍ତା ? ଦେଖେଇବା ପାଇଁ କଣ ଘଣ୍ଟାରେ ସ୍ୱଚ ମୋଡ଼ିଲା ପରି ଜଣକ କଥାରେ ଦେଶ ଗୋଟାକର ପ୍ରାଣ ଏକା ଥରକେ ଗତି କରନ୍ତା ! ଜଣେ ଠାରି-ଦେଲେ ହଜାର ହଜାର ଲୋକ ନିଆଁକୁ ଡେଇଁ ପଡ଼ନ୍ତେ ଜୀବନଟାକୁ ମୁର୍ଚ୍ଛି ଦେଇ ! ଜଣକର ନାଡ଼ି ସଙ୍ଗେ ଲକ୍ଷ ଲକ୍ଷ ନାଡ଼ି ବନ୍ଧା ହେଲା ଭଳି ପଡ଼ନ୍ତା ଉଠନ୍ତା ? ଜଣକ ସଙ୍ଗରେ ଲକ୍ଷ ଲକ୍ଷ ଲୋକ କାନ୍ଦିବେ ହସିବେ, ଖାଲି କଣ ଦେଖେଇ ହେବା ପାଇଁ ! ଦେଖେଇବା ପାଇଁ ହେଲେ କ ପୃଥିବୀସାରାକରେ ସବୁଠଁ ବଡ଼ ରାଜଶକ୍ତି ଦୋହଲି ପଡ଼ନ୍ତା ! ତେବେ ସେ ଦେଖାଣିରେ ବି ଆମର ତ ମୁନାଫା ଅଛି ! ବରଜୁର ବେଶି ପଢ଼ା ଶୁଣା ନ ଥିଲେ ମଧ୍ୟ ପାଞ୍ଚ ଦଶ ପୁରୁଷ ଭିତରେ ଆଉ ଜଣେ ଇମିତି ପୁରୁଷ ତ ଏ ଦେଶରେ ଜନ୍ମିଥିବାର ସେ କାହାରି ମୁହଁରୁ ଶୁଣି ନାହିଁ ।

ଗାନ୍ଧିଙ୍କୁ ସେ ଦେଖେ ଚୈତନ୍ୟ କି ନାନକ ଭଳି ଜଣେ ମହାପୁରୁଷ ଯେ ନିଜ ଗୁଣରେ ହଜାର ହଜାର, ଲକ୍ଷ ଲକ୍ଷ ଲୋକଙ୍କ ହୃଦୟକୁ ଟାଣି ନିଅନ୍ତି । ସେ ଠିକ୍ କଲେ କି ଭୁଲ କଲେ—ତାଙ୍କର କଥା ପଦକ ମାନି ଭୁଲା ଭଣା କାମଠାରୁ ଜେଲରେ ପଶିବା ଯାକେ ଏତେ ଲୋକ ଯେ ବାହାରି ପଡ଼ିଲେ, ଏହା କଣ କମ୍ କଥା ! ପୁଣି ଭାରତର କୋଟି ଲୋକ ଯେ ଆପଣାକୁ ପହିଲେ ପରାଧୀନ ବୋଲି ବୁଝିଲେ, ଏହାର କଣ ଦାମ୍ ନାହିଁ ?

ଗୁରୁବାର ଶୁକ୍ଳ ଦଶମୀ । ହାସକୋଇଲର ସୁଦଶାବ୍ରତ । ମୁଣ୍ଡ ଧୋଇ ଗାଧୋଇ ସେ ଖଣ୍ଡେ କୁମ୍ଭପଡ଼ା ଚଗିଛଆ ମଠା ପିନ୍ଧିଛି । ଘଣ୍ଟ କଣେ ନ ପାହୁଣୁ ଉଠି ସ୍ଥଗଡ଼ର ଘର ଲିପା ପୋଛା କରିଥିଲା । ଗାଧୋଇ ସାରି ସେ ଘିଅଦୀପ, ଫୁଲ ଚନ୍ଦନ ସଜାଡ଼ି ରଖିଲା ।

ବାସୁ ପୁରେଣ୍ଡର ପୋଥି ଫିଟାଇ ଢ଼'କାନରେ ପ୍ରଚଣ୍ଡର ଯୋଡ଼ାଏ ସୂତା ଗୁଡ଼ାଇଲେ । ଅକ୍ଷର ଚିହ୍ନା କଣ୍ଟାକୁ ପୋଥିରେ ମେଞ୍ଚାଏ କଲବଘଡ଼ ଘଷି ପଢ଼ି ବସିଲେ, "ଶୁଣ ହେ ପ୍ରାଣିମାନେ, କେଉଁଣସି ବନରେ ସୁଦଶାବ୍ରତ ପଢ଼ିଲ । ଧର୍ମଗଡ଼ ରାଜାର କଟକରେ ତାହାର ପଦ୍ମାବତୀ ରାଣୀ । ତାହାର ଗଦାଧର ବୋଲି ମନ୍ତ୍ରୀ । ଏ ମନ୍ତ୍ରୀ ଭାର୍ଯ୍ୟା ନାମ ପାର୍ବତୀ । ରାଜା ଭାର୍ଯ୍ୟା ମନ୍ତ୍ରୀ ଭାର୍ଯ୍ୟା ଏ ଦୁଇଜଣଙ୍କ ଆଗେ ଆସି ପାଠ ଜଣାଉଅଛ କରିଲ । ଶୁକ୍ଳପକ୍ଷ ଦଶମୀ ଗୁରୁବାରେ । ଏମନ୍ତେ ପଢ଼ିଲ ମହାଲକ୍ଷ୍ମୀଙ୍କ ବ୍ରତବାର ।"

ସାଇପଡ଼ିଶାରୁ ଦଶ ବାର ଜଣ ଅନ୍ଧଅ ଓଷେଇଣ୍ଡ କାନ ପାରି ଶୁଣୁଥାନ୍ତି । ମଝିରେ ମଝିରେ କାହାର ହାତ ଗଣ୍ଡୁକ ଗୋଡ଼ ଖଣ୍ଡୁ ଟିକଏ ଝଣଝଣ ହୁଏ । କାହା ପିଲା ଅବା ରଡ଼ି ଛାଡ଼େ । ଗୋଟେଇଁ ସିଆଡ଼ିକୁ ନ ବୁଝି ଖାଲି ଘିଅ ମାପଟାକୁ ଥରେ ଅଧେ ଚେଇଦେଇ ପଢ଼ୁଥାନ୍ତି, "ଜୀବନ୍ତେ ଭପୁଲ ଭୋଗ, ପରଲୋକେ ଲକ୍ଷ୍ମୀଆଳେ ସ୍ଥିତି । ଏ କଥା ଶୁଣି ପଦ୍ମାବତୀ ରାଣୀ, ମନ୍ତ୍ରୀ ଭାର୍ଯ୍ୟା ପାର୍ବତୀ, ଏ ଦୁହିଁଙ୍କେ ମହାଲକ୍ଷ୍ମୀଙ୍କ ବ୍ରତ କରିବେ ବୋଲି ସଂକଳ୍ପ କଲେ ।"

କଥା ମଝିରେ ରହି ରହି ଦଶ ବାର ମାଇପେ ଏକା ସ୍ୱରରେ ହୁଳହୁଳି ଗୁଡ଼ ଗାଁ କମ୍ପେଇ ଦଅନ୍ତି । ଥରେ ହୁଳହୁଳି ଉପରକୁ ଉଠି

ଆସ୍ତେ ବନ୍ଦ ହେଲା ବେଳକୁ ହାମ ତା’ ବୋଝ ଉପରେ ଛୁଡ଼ା ହେଲା । ସମସ୍ତେ ଠାକୁର ଓ ପୁରୋହିତଙ୍କ ଆଡ଼କୁ ମୁହଁ କରି କଥା ଶୁଣୁଛନ୍ତି । ତା’ ଆଡ଼କୁ କାହାରି ନଜର ନାହିଁ, ଏକା ଜଣକୁ ଛାଡ଼ି । ସେ ସଦର ଥାନାର ଝିଅ ଦୁଲାଳୀ । ଦୁଲି ବୋଲି ତାକୁ ସବୁ ଡାକନ୍ତି । ଆଠ ଦଶ ବର୍ଷର ପିଲା ଝିଅଟା । ହାତରେ ଦି’ବାନ୍ଧ ବାଉ ଉପରେ ରୁପା ଚୂଡ଼ି, ତା ତଳକୁ ପଇଁଚ ଖଡ଼ୁ, କଟଫଳ, ପୁଣି ବାହାରେ ତାଡ଼ି । ନାକ, କାନ, ଗୋଡ଼, ଆଙ୍ଗୁଠି ଅଳଙ୍କାରରେ ଆଉ ଗଦା ନାହିଁ । ହାମ ତାକୁ ଇସ୍କୁଲରେ ‘ନୂଆବୋହୂ’ କହି ଚିଡ଼ାଏ ବୋଲି ଦୁଲିର ତା’ ଉପରେ ଘୃଣା ରାଗ । ସେ ହାମକୁ ଠୁଣ୍ଟି ଖଟେଇ ଦେଲା ।

କଥା ଟିକଏ ଥମିଲାରୁ ହାମ କହିଲା, “ବୋଉ, ଅପା ଘରୁ କଏ ଜଣେ ଆସିଛି ।”

“ହଉ ରହ, ପୂଜା ସରୁ” କହି ହାମବୋଉ ହାମଘର କଥା ପଛକୁ ରଖି ଆଗ ବ୍ରତ କଥା ଶୁଣିଲା ।

ସମୁଦିଘରୁ ଆସିଥିବା ଲୋକଜଣକ ବାଟାନି ଦେଲା, ହାମର ଝରି ବଡ ଦୁଖ । ବସିଲାଠାରୁ ଉଠି ଆସିବାକୁ କହୁଚନ୍ତି ।

ବରଜୁ ସେତେବେଳେ ଗାଁ ଭିତରୁ ଘର ଘର କରି ହାତକଟା ସୂତା ଅସୁଲ କରୁଥାଏ । ନିଶାକର ସାହୁଙ୍କ ପିଣ୍ଡାରେ ସେ ଆଉ ଜୟକୃଷ୍ଣ ବସିଚନ୍ତି । ବରଜୁ କରୁଚି ସୂତା ଓଜନ, ଜୟକୃଷ୍ଣ କହୁଚନ୍ତି ରାଗ । ପାଖରେ ନିଶାକର ସାହୁ, ମଦନ ଖୁଣ୍ଟିଆ, ମାଧ ମହାରଣା ଖଣ୍ଡେ ଗାମୁଛା କାନ ପାଣ୍ଟେଇ ତାହା ଉପରେ ଦଶ ବାର ଖିଲ ପାନ ଜାଙ୍କି ବସିଛନ୍ତି ।

ବରଜୁଲୁ ଏବେ ଗୋଟାଏ ଶକ୍ତ କାମ ମିଳି ଯାଇଛି । ହରିପୁର ଗାଁଟାର ତିନ ହଜାର ଘର ଭିତରେ ଶହ ଶହ ଅରଟ ସନ୍ତୋଷଜନ ଘର୍‌ଘର୍ ଶବ୍ଦ କରି ବୁଲେ । ସୁର ପଇସିକିଆ ଅରଟ ଗୀତ ବହିଖାଲି ସୁଗ୍ରୀବ ଲେଙ୍କା ସାହି ସାହି ବୁଲି ବିକେ । ତା’ ସାଥିରେ ଚାରଦେଶ କାନ୍ଦ, ଶାଶୁବୋହୂ କଳି, ଦଶଅବତାରର ରହସ୍ୟ, କାଠ ଓଷା, ଭ୍ରମରବର ଗାଳି, ବତିଶ ସିଂହାସନ, ଢଳଙ୍କା ସମାପ୍ତଣ, ପ୍ରେମସୁଧାନିଧି ବା ନୃସିଂହ ପୁରାଣରୁ ବି ଖଣ୍ଡିକେ ତାର ବିକ୍ରି ହୋଇଯାଏ । ପିଠରେ ବହି ବୋଝଟି ଲଦି ସେ ସୁର ଲମ୍ବାଇ ବୋଲେ—

"ଅରଟରେ କାଟ ସୂତା ଗୋ ଫୁଲ ବଉଳ ବେଣୀ
ଘରଧନ ଚୋର ପର ନ ଖାଇଲେ
ପାଇବୁ ଗଜ ମୁକୁତା ଗୋ ଫୁଲ ବଉଳ ବେଣୀ ।"

ସୁଗ୍ରୀବ ଲେଙ୍କାର ଗଳାଟି ଭାରି ମିଠା । ଯେଉଁ ଗୀତ ବୋଲୁ, ଯେତେ କାମ ଥିଲେ ବି ଲୋକେ କାନ ପାରି ଶୁଣନ୍ତି । ବୋହୂ ଭୁଆସୁଣୀମାନେ କବାଟକୁ ଆଉଜା କରି ଶୁଣନ୍ତି । ତଳପଟ ଘରର ପାଠ ପଢ଼ିଥିବା ଝିଅମାନେ ତାକୁ ଦାଣ୍ଡ ପିଣ୍ଡାରେ ନଇଲେ ଘର ଭିତରେ ବସାଇ ବହି ଦେଖନ୍ତି । ଗଣ୍ଠିଲି ଫିଟାଇ ତାହା ଭିତରୁ ସୁଗ୍ରୀବ କେତେ ନାଲି, ନେଳି ରଙ୍ଗ ମଲାଟର ସୁନ୍ଦର ସୁନ୍ଦର ବହି କାଢ଼ି ସେଥିରୁ ଦି’ଚାରି ଧାଡ଼ି ବୋଲିଦିଏ । ମଥୁରି ସାହୁଙ୍କ ଝିଅ ଜମାରୁ ଖାସା ପଢ଼ା । ଯେଉଁ ବହି ତା’ ହାତରେ ଧରେଇ ଦିଅ, ଛାଣି ପରି ତା’ର ମୁହଁରୁ ଗୀତଗୁଡ଼ା ବାହାରି ଆସିବ ଯେ ଠାଏ ହେଲେ କେଉଁଠି ଅଟକିବ ନାହିଁ । ପୁଣି ତାର ହାତରେ କଙ୍କଣ



ଅଣ୍ଟରେ ଝାଟ ସୂତ ଗୋ… ଫୁଲ ବଉଳ ବେଣୀ । [ ପୃ ୧୬୩

ହେଲେ ସ୍ୱାମୀକର କୁଆଡ଼େ ଖୁବ ବନ୍ଧୁ ବଢ଼ି ହୁଏ । ସେଥି-ପାଇଁ ଆଗ ସେ ମଥୁରି ସାହୁଙ୍କ ଦୁଆରେ ପାଣ୍ଟି କରି ଗୀତ ବୋଲେ । ଜମା ବାହାରି ଆସିଲେ ସ୍ୱର ପାଞ୍ଚ ଖଣ୍ଡ ନୂଆ ବନ୍ଧୁ ତା' ହାତକୁ ବଢ଼େଇଦିଏ । ଖଗ୍‌ବେଳଆ ପଡ଼ଣା ଅଡ଼ଣା ଝିଅ ମାଇପଙ୍କ ମେଣ୍ଟରେ ଗୀତ ବୋଲିବା ଜମାର ଗୋଟାଏ କାମ ଥିଲା । ସ୍ୱାମୀଙ୍କ ହାତରୁ ଅରଟ ଗୀତ କଣି ଏବେ ଝିଅଙ୍କ ଭିତରେ ବୋଲି ଶୁଣେଇଲାଣି ।

ଆଗେ ତନ୍ତୀସାହିରେ କଳସୂତାର ଲୁଗା ଗାମୁଛା ବୁଣା ହେଉଥିଲା । ଏବେ ତନ୍ତୀମାନେ ଖଦିକେନ୍ଦ୍ରରୁ ମଜୁରି ପାଇ ହାତକଟା ସୂତାରେ ଲୁଗା ବୁଣିଲେ । ତେବେ ସେ ସବୁ ଜିନଷ ହରିପୁର ହାଟରେ ବେଶି କଟିବ ନାହିଁ ବୋଲି କଟକ ପୁରୀକୁ ଚାଲାଣ ହୁଏ । କଳସୂତାର ଲୁଗା ଗାମୁଛାଠାରୁ ହାତକଟା ସୂତା ଲୁଗାର ଦାମ ପୁଣି ଢେର ବେଶି । ମଫସଲରେ ଅବା ଲୁଗା କିଣୁଚନ୍ତି କେତେ ? କୁଡ଼ୁଆଁ ମଇଳ, ବାହାପୁଆଣି ଦାଣ୍ଡହାଟରୁ ସାହା ଖଣ୍ଡେ ଅଧେ ଆଠ ନ' ହାତ ଦରକାର । ସାହାହେଉ, ପାଠ ପଢ଼ୁଆ ବାବୁଭାଇଙ୍କ ଭିତରେ ହାତକଟା ସୂତାର ଖଦଡ଼ ଲୁଗା ବେଶି ଚାଲୁ ହେଲା । ତାକୁ ପିନ୍ଧିବାକୁ ଗଉଁଲି ଗୁହୁବା ପଇସା ପାଇବେ କାହୁଁ ?

ବରଜୁ ନିଜେ ସିନା ଖଦଡ଼ ପିନ୍ଧିଲା । ବର ବେଶି ହେବାରୁ ଗାଁ ଭିତରେ ଆଉ କାହାକୁ ପିନ୍ଧେଇ ପାରିଲା ନାହିଁ । ଲଗେଇ ଲଗେଇ ତା'ର ମୋହବତରେ ପଦିଆ ଖଣ୍ଡେ ଗାମୁଛା କିଣିଥିଲା । ସେ ଖଣ୍ଡେ ମୁଣ୍ଡରେ ବାନ୍ଧି ତା' ଉପରେ ମୁଢ଼ି ବୋଝ ଥୋଇ ସେ ଗାଁ ଗାଁ ବୁଲି ବୁଲେ ।

ତେବେ ପଦଆ ମୁହଁରୁ ଖଦଡ଼ର ପ୍ରଶଂସା ଶୁଣି ବରଜୁ ମନଟା ଖୁସି ହୋଇଗଲା, "ଯାହା କହୁଥିଲ ପୁଚ, ସତକଥା । ଗାମୁଛା ଖଣ୍ଡ ପୁଣି ଏମିତି ପଡ଼ିଲା କି !" ବରଜୁ ତାକୁ ସନ୍ତୋଷ ହୋଇ ପୁଛିଲା । ତା'ର ପେଟ ପୂରି ଉଠୁଥାଏ । ସେ କହିଲା, "ଜାଣ ପଦଆ ମାମୁଁ, ସେ ଗାମୁଛା ଖଣ୍ଡିକର ସବୁ ସୂତା ମୁଁ ନିଜ ହାତରେ କାଟିଛି ।"

ପଦଆ କହିଲା, "ନିଜ ହାତରେ ? କଣ କହୁଛ ? ଯାହା-ହଉ, ଠେଙ୍ଗା ମୁଣ୍ଡରେ ଭୂତ ଯେତେ ଉଚ୍ଛା ହୋଇଁ ନଚ ଧଅ, ଖାଲି ତୁଳା ଗଦ ଉଳି କଅଁଳ ଲାଗୁଛି ।"

"ସେତିକି ନୁହେଁ, ପଦଆ ମାମୁଁ, ଖଦଡ଼ ହେଉଛି ଅତି ପବିତ୍ର ଜିନିଷ । ଆମ ଦେଶ ନେତାମାନେ ସବୁ କହନ୍ତି, ସ୍ୱଦେଶୀ ଲୁଗା ପିନ୍ଧି ଦେଉଳ ଭିତରକୁ ଗଲେ ଓଅଁଙ୍କ ଜାତି ଯିବ । ସହର ବଜାରରେ ବଡ଼ଲୋକମାନଙ୍କ ଘରେ ଯେତେ ବିଲାତି ଲୁଗା ଥିଲା, ସବୁ ପୁରୁଷେ ଓ' ପୁରୁଷ ଭିଡ଼ରେ ଗଦାକରି ନିଆଁ ଲଗେଇ ଦେଲେଣି । ଶୁଣିଛ ନା ?"

ପଦଆ ଚମକିଲା, ହେଲେ ହୋଇଥିବ । ତେବେ ବଡ଼ଲୋକଙ୍କ ଘରେ ଏମିତି କେତେ ଲୁଗା ଥାଏ କି ପୁରୁଷେ ଭିଡ଼ରେ ଗଦା କରି ନିଆଁ ଲଗାହୁଏ ! ଦକ୍ଷପୁର ଗାଁଟାଯାକ ଲୁଗା ଗୋଟାଇଲେ ଭଲ ପୁରୁଷେ ଭିଡ଼ରେ ଗଦାଟାଏ ହେବ । ଓଅଁ ଦେଉଳରେ ଯେତେ ପଣ୍ଡା ମାଳୀ କାମ କରନ୍ତି, ସମସ୍ତେ ଖଣ୍ଡେ ନେଖାଁ ହାତେ ଓସାର ତିନି ହାତ ଲମ୍ବ କମଣ୍ଡିଆ କଉପୀ ପିନ୍ଧନ୍ତି । ସେ ଖଣ୍ଡି-ମାନଙ୍କରେ ନିଆଁ ଲଗେଇ ଦେଲେ ସେ ବିଚରା ଭଲ ଚଳିବେ କିମିତି ? ପୁଣି ଦ'ଅଣା ତିନିଅଣା ଗାମୁଛାରେ ଯାହାଙ୍କର ଚଳୁଛି,

ସେ ଆଠଣା ଦଶଣା ଖର୍ଚ୍ଚ କରି ଖଦଡ଼ ଗାମୁଛା ପିନ୍ଧିବେ କୁଆଡୁ ? ହଁ, ବଡ଼ଲୋକଙ୍କ ଘରେ କେତେ ଲୁଗାପଟା ଥିବ; ଶୁଣା ତ ଯାଏ, କାହାର କାହାର ଲୁଗାପଟା ସାହାବଙ୍କ ଦେଶକୁ ଇସ୍ତ୍ରୀ ହେବାକୁ ଯାଉଥିଲା । ଆଜି କାହାର ଯୋଡ଼ା କୁଆଡ଼େ ବିଦେଶୀ କାରଖାନାରେ ବଗଦ ଧୁଆ ଯାଉଥିବ ବୋଲି ଜଣାମଣି ବାବୁ କହନ୍ତି । ପଦଆର ଘରଗୋଠାକ ଦରଣ୍ଡିଲେ ତ ପାଣିସୁଆ ହେସଖଣ୍ଡକ ଛଡ଼ା ଚୁଣ୍ଡା ମସିଆ ହୋଇ ସୁଲ ପାଞ୍ଚ ଖଣ୍ଡ କନା ବାହାରିବ କି ନାହିଁ । ସେଥିରୁ ସେ ନଆଁରେ ସୋଡ଼ିବ କେତେ ଆଉ ଘରେ ରଖିବ କଣ ? ଦ'ବର୍ଷ ତଳେ ନବାବ କଲିକତାରୁ ବାପମାଙ୍କ ପାଇଁ ଯେଉଁ ଦ' ଯୋଡ଼ା ଧୋତି-ଶାଢ଼ୀ ଆଣିଥିଲା ତା'ର ଉପରେ ତାରଜାଗା ତାଳି ପକେଇ ଆଜି ଯାକେ ତ ଦ' ପ୍ରାଣୀ ଚଳୁଛନ୍ତି । ଏଥର ଗୌରୀ ଦାହାଘରକୁ ଖଣ୍ଡେ ନୂଆ କନା ସେ ଦେଖିଲା । ତେବେ ଖାଲି ସୂତା କାଟିଲେ ଭଲ ଲାଭ ଅଛି ବୋଲି ବାବୁମାନେ ଯାହା କହୁଛନ୍ତି, କାହିଁ, ମୁଢ଼ୀ ଉଖୁଡ଼ା ବେଉସାଠାରୁ ତଣ୍ଟିରେ ବେଶି ଉପାୟ ହବ ବୋଲି ସେ ତ ବୁଝି ପାରେ ନାହିଁ ?

ଜସ୍ପି ବାବୁ କହି ଚାଲିଥାନ୍ତି, "ମୋ ଗୋସେଇଁ ମା ନିଜ ହାତରେ ସୂତା କାଟି ତାହାର ପଇସାରେ ଗୋଟାଏ ମାହାଳି ଖଣ୍ଡ କରିଥିଲେ । ସେ ମାହାଳିଟାକୁ ଏବେ ବି ସୂତାକଟା ମାହାଳି କହନ୍ତି । ଆମ ଖମାର ଘର ଉପରେ କେଉଁ ଦିନୁଁ ଲୋକ ଚଢ଼ି ନଥିଲେ । ସବାରି ତାମଯାନ ଗୁଡ଼ାକ ପୁରୁଣା ଉଇଖିଆ ହୋଇ ପଡ଼ିଚି । ତାହା ସାଙ୍ଗକୁ ପୁରୁଣା ହାତଭଙ୍ଗା ଚୌକି, ଖାଟି, ଛିଣ୍ଡା ଦଉଡ଼ି ଟୋକେଇ ଟିଣ କେତେ କଣ । ପୁଣି ସାପ ଭୟ । କେଉଁ କାଳୁ ତା' ଉପରେ ଲୋକ ଚଢ଼ି ନ ଥିଲେ । ଏବେ ଗୋଟାଏ କାଠ ଖୋଳା ପଡ଼ିବାରୁ ମଣିଷ ଚଢ଼ିଲେ । ସୁବିକ୍ଷଣ୍ଡ ପିଆଶାଳ ପଟା ଉଠାଇ ତା' ତଳୁ ବାହାରିଲା ପାଞ୍ଚ ସ ତଟା ଭଙ୍ଗା ଅରଟ ।"

ତେଣେ ନକ୍ସି ଝୁଲଇ ବରଜୁ ସୂତା ଓଜନରେ ଲଗି ଥାଏ, ଜସ୍ପି ବାବୁଙ୍କ କଥା ସଙ୍ଗେ ତାଳ ପକାଇ । ମନ ଭିତରେ ତା'ର କେତେ ଭାବନା ଉଠୁଥାଏ ପଡ଼ୁଥାଏ । ମଝିରେ ମଝିରେ ଛୁମ ଟାଙ୍କୁର ଉଠେ । ସତେ ଏ ଦୁନିଆଟାରେ ମଣିଷର ବଳ ଭାବନା କଣ ? କାହିଁପାଇଁ ତାର ଚିନ୍ତା ? ଖାଇବା ପିନ୍ଧିବା ପାଇଁ ? ଲୁଟି ଖାଇବ କାଟି ପିନ୍ଧିବ, ଏତ ଆମର ବହୁତ କାଳର କଥା, ନିଜ ହାତ ପାଉଣାରେ ଯାହା ଅଛି, ତାକୁ ଗୁଡ଼ ଆମେ ଅଟକଇ ବସିଛୁଁ ବାହାରକୁ । ନିଜ ପୋଖରୀରେ ପାଣି ଥାଉଁ ଥାଉଁ ଅକାମୀ ଯେମନ୍ତ ମେଘକୁ ଅଟକଇ ବସେ ।

କଏ ଜଣେ ଟୋପିପିନ୍ଧା ବାବୁ ବାଣ୍ଡ ମଝିରେ ସାଇକେଲରୁ ଓହ୍ଲେଇ ପଡ଼ିଲେ । ବରଜୁ ଲୁହ୍ନିଁ ଦେଖିଲା ବାସେଗା ସୁରେନ୍ଦ୍ର ବାବୁ । ଜସ୍ପି ବାବୁ କଥା ଗପି ଚାଲିଥାନ୍ତି, "ମୁଁ ଯେତେବେଳେ ସାନପିଲା, ଆମ ରୁପାଧାଙ୍କ କୋଳରେ ଶୋଇ ଗୀତ ଶୁଣିଚି, 'ବାପୁ ମା

ଯେ ସନ୍ତୁକାଟୁଣୀ ପୁଅକୁ ପିନ୍ଧାଏ ପାଟ ପଟମା, ଝିଅକୁ ପିନ୍ଧାଏ ନେତ; ଆପେ ପିନ୍ଧଇ କଳା ବୋଇତ, ଉଣ୍ଟେଇ ନେଉଛୁ ଭୁତ ।' ଗୀତଟାକୁ ସେତେବେଳେ ମୁଁ ବୁଝି ପାରି ନ ଥିଲି, ଏବେ ବୁଝୁଚି କାଯ୍ୟାମାର ଗୁଣ । ସେ ସନ୍ତୁ କାଟୁଣୀ ବୋଲି ପୁଅଝିଅଙ୍କୁ ଏମନ୍ତ ସୁନ୍ଦର ଲୁଗା ପିନ୍ଧାଏ, ଆପେ ପୁଣି ପିନ୍ଧେ ।" ଜୟି ବାବୁଙ୍କ କଥା ସାଙ୍ଗକୁ ମଦନ ଖୁଣ୍ଟିଆ ଖର୍ ଖର୍ କରି ଗୁଆ କାଟିରେ ପାନ ଭାଙ୍ଗୁଚି, ନଣାଙ୍କର ସାଦୁ ଘର୍ର୍ ଘର୍ର୍ କରି ସୂତା କାଟୁଚି, ବରଜୁ ନଲିରେ ସୂତା ଉଜନ କରି ଚାଲୁଚି ।

ଗାଁ ଡାଣ୍ଡରେ ଚଫାଦାର ଚାଲିଗଲେ ଲୋକେ ଡରିବରେଇ ଯିବାର ଦିନ ଆଉ ନାହିଁ । ଦାରୋଗା ସୁରେନ୍ଦ୍ର ବାବୁ ସେ କଥା ଅଳ୍ପ ବହୁତ ବୁଝିଛନ୍ତି । ସାଇକଲଟାକୁ ଭରା ଦେଇ ସେ ଛୁଡ଼ା ଛୁଡ଼ା ପଚାରିଲେ, "କଣ, ଖୁବ୍ ତ କାମ ଚାଲିଚି ।" ଜୟି ବାବୁ ଭଦ୍ରତା ଦେଖାଇ କହିଲେ, "ଆସନ୍ତୁ ଆଜ୍ଞା, ଉପରକୁ । ନମସ୍କାର ।"

ଦାରୋଗା ବାବୁ ନମସ୍କାରଟାକୁ ଓଲଟାଇ ଲଉଲେ କି ନାହିଁ କେହି ଦେଖିନ । ଏକା ଜୟି ବାବୁ ଦୁଏ ତ ଦେଖିଥିବେ । "ନାହିଁ, ମୋର ଗୋଟାଏ ଇନ୍‌କ୍ୱାରି ଅଛି । ବଡ଼ ଜରୁରି ।" ଜୟକୃଷ୍ଣଙ୍କ ଭଳି ମେଳାପୀ ଲୋକ ସାଥିରେ କାହାର ବା ଜଣାଶୁଣା ନାହିଁ ?

ଦାରୋଗା ଜୟକୃଷ୍ଣଙ୍କୁ ଡାକିଲେ, "ପଦେ କଥା ଥିଲା ।"— "କଣ, ମୋ ସାଥିରେ ?" କହି ଜୟି ବାବୁ ପିଣ୍ଡାରୁ ଓହ୍ଲାଇ ତାଙ୍କ ପାଖକୁ ଆସିଲେ ।

ଦାରୋଗା ପଚାରିଲେ, "ସୂତା ଉଜନ କିଏ କରୁଚି କି ?"

"ଆପଣ ପଧାନଙ୍କୁ ଜାଣନ୍ତି ନାହିଁ, ଡାକିଦିଏଁ ତାଙ୍କୁ ?"

"ନାହିଁ, ଦରକାର ନାହିଁ, ସେଇ 'ଯେ ଲୋକଟି ଗୌରାଙ୍ଗ ଶେଣ ଘରେ ଆସି ରହିଛି ପରା ? ନାଁ କଣଟି ?"

"ବରଜ୍ ପ୍ରଧାନ, କାହିଁକି ଆଜ୍ଞା, କଥା କଣ ?"

ଦାରୋଗା ମୁରୁକି ହସି କହିଲେ, "ନାହିଁ, ସେମିତି କିଛି କଥା ନାହିଁ ଯେ—ତେବେ ପ୍ରଧାନପଡ଼ାକୁ ଯାଉଛି ମୁଁ ଗୋଟାଏ କେସ୍ ଇନ୍‌କ୍ୱାରୀରେ । ସେ ଗାଁରେ ଗୋଟାଏ ଖୁନ୍ ହୋଇଯାଇଛି ।"

"କାହାଘରୁ ବାବୁ ?" ଜୟକୃଷ୍ଣଙ୍କର ଆଗ୍ରହ ବଢ଼ିଲା ।

"ଖୋଦ ପ୍ରେସିଡେଣ୍ଟ ଘରୁ । ସେ ଗାଁରେ ଆଉ ଟଳମ୍ପଷ କଏ ଅଛି କି ? ହଉ, ମୁଁ ଯାଏ ।" ଦାରୋଗା ସାଇକେଲ ଚଢ଼ି ଚାଲିଲେ ।

ଜୟବାବୁଙ୍କ ମୁହଁରୁ ଦାରୋଗାବାବୁଙ୍କ କଥାତକ ବରଜ୍ ଶୁଣିଲା । ପ୍ରଧାନପଡ଼ା ଗାଁମୁଣ୍ଡ ହୁଙ୍କା ଉପର ଡମିରିଗଛଟାଠାରୁ ଆରମ୍ଭ କରି ବରୁପା ନଈର ଶୀତଳନଈ ସବୁ ସୁଅଧାରଟି ମଧ୍ୟ ଆଜି ତାକୁ ଯେମିତି ଡାକିଲେ "ଥରକ ପାଇଁ ହେଲେ ଆ ବରଜ୍, ଆମେ ଟିକିଏ ତରେ ଦେଖିବୁଁ । ତୁ ଯେ ଆମର କେତେ ପୁରୁଣା, କେତେ ଜଣାଶୁଣା ।"

ନକ୍ସାଟା ତଳେ ରଖି ଦେଇ ବରଜ୍ ଉଠି ଛିଡ଼ା ହେଲା । ଜୟକୃଷ୍ଣ କାବା ହୋଇ ପଚାରିଲେ, "କୁଆଡ଼େ ବାହାରିଲୁ ? ସତା ଓଜନ ସରିନ ପରା ?"

"ସୁତା ଓଜନ ସେତିକି ଥାଉ, ବାବୁ ! ମୁଁ ଟିକିଏ ପ୍ରଧାନପଡ଼ାକୁ ଯିବି ।"

“ହଠାତ୍ କାହିଁକି ?”

ସେ ଖାଲି ଟିକିଏ ହସି ଦେଇ କହିଲା, “କାମ ଅଛି, ବାବୁ ! ସଞ୍ଜାକୁ ପୁଣି ଆସିବି ଯେ ।”

ଜଗୁ ବାବୁଙ୍କ ମନ ବୁଝିଲା ନାହିଁ । ଚୋରି ମକଦ୍ଦମା ତଦନ୍ତ ପାଇଁ ଦାରୋଗା ଗଲେ, ତାଙ୍କ ସଙ୍ଗେ ବରଜୁ ଯାଉଛି କାହିଁକି ? ହରି ମିଶ୍ରଙ୍କ ଘରୁ ତ ଚୋରିଗଲା, ବରଜୁର ଗଲା କଣ ?

ମଦନ ଖୁଣ୍ଟିଆ କହିଲା, “ପୁଲିସ ତ ଚୋର୍ ଧରିବାକୁ ଯାଉଛି, ତୁମେ ଯିବ କଣ କରିବାକୁ ?” ମାଧ ମହାରଣା ଟିକିଏ ଖେଁ କରି ହସି ଦେଲା ।

“ତାଙ୍କର ଆଉ କିଛି କାମ ଥିବ ନା, ଯେତେହେଲେ ଆପଣା ଗାଁ, ଘର, ଭଲବାର । ମନ ହେବନି ?” ନଶାକର ସାହୁ ଜଗୁକୃଷ୍ଣଙ୍କୁ ପାନଖିଲ ବଢ଼ାଇ ଦେଇ କଥାଟାକୁ ବାଗେଇ ନେଲା ।

ମାଧ ମହାରଣା ଗୋଟାଏ ଭୁଲ କରି ପକେଇଲା ଭଳି କହିଲା, “ପଧାନେ ସେମିତି ପ୍ରତିବନ୍ଧିଲ ବୋଲି ଆଜଯାଏ ଘରଛୁଡ଼ ରହିଛନ୍ତି କି ! ମୁଁ ଘର ଛୁଡ଼ ଯୋଡ଼ାଏ ଦିନ କାହିଁ ରହିଗଲେ ତେଣିକି ମନ ଉଡ଼ିବ ।”

ବରଜୁ ପଧାନ କାହାରିକି କିଛି ଜବାବ ନ ଦେଇ ମୁଣ୍ଡରେ ଠେକାଟା ଭିଡ଼ି ବାହାରି ପଡ଼ିଲା । ସବୁରି ମଝିରେ ସଳଖ ହୋଇ ଛିଡ଼ା ହେଲାବେଳେ ସମସ୍ତେ ଯେମିତି ଭାବିଲେ ତା’ର କାହାକୁ କିଛି ଜବାବ ଦେବା ଲୋଡ଼ା ନାହିଁ । ସେ ନିଜେହିଁ ଯେମିତି ସବୁ କଥାର ଜବାବ ।

ସେଥିପାଇଁ କେହି ଆଉ ତାକୁ କିଛି ପଚାରିଲେ ନାହିଁ ।

ଘରକୁ ଫେରି ଶୁଣିଲା, ତାଙ୍କର ବଡ଼ ଭାରି ଦୁଃଖ । ବସିଲା-ଠାରୁ ଉଠି ଆସିବାକୁ ଚେଷ୍ଟାକରି ଆସିଛି । ତାଙ୍କଘୋଡ଼ା ପାଣି ଢାଳଟା ବରଜୁ କୋଉ ଆଡୁ ଆଣି ଥୋଇଲା । ସେଥିରୁ ଟିକେ ପାଣି ଟହଳି ପଡ଼ି ବରଜୁର ପାଦ ଆଙ୍ଗୁଠିକ ଥଣ୍ଡା କଲା । ବର୍ଷାହିଆପାଗ ସାଙ୍ଗକୁ ତାଙ୍କଦୋଉ ଗରମ ମୁଢ଼ିରେ ସୋରିଷ ତେଲ ଟୋପା ଗୋଟିଏ ଭଲ କଲଗିଆ ଆଣି ଥୋଇଲା । ମୁଢ଼ି ମୁଠାଏ ଜଳଖିଆ ଖାଇ ବରଜୁ କେତେ କଥା ଭାବୁଥିଲା । ତାଙ୍କର ବଡ଼ ଦୁଃଖ କେଳକୁ ପଧାନପଡ଼ାରେ ପୁଲିସ ତଦନ୍ତ ! ମନଟା ତାର ଘାଣ୍ଟି ଚକଟି ହେଲା । କଣ କରିବ, କୁଆଡ଼େ ଯିବ ଠିକ୍ ଭାବି ପାରୁନି ନାହିଁ । ତାଙ୍କପରୁ ମଣିଷ ଆସିଛି । ପଧାନପଡ଼ାରୁ ତ କେହି କହୁ ଖବର ଦେଲେ ନାହିଁ ? କାହିଁକି ନ ଦେଲେ ? ସଦୁ, ନଧି, ମାଧିଆ, ଧରମା ସମସ୍ତେ କଣ ତାକୁ ପାସୋରି ଦେଲେ ? ହଁ, ବରଷେ ହେଲା ଗାଁ ଛାଡ଼ି ଆସିଲଣି, ଆଉ କିଏ କାହିଁକି ତାକୁ ପଚାରିବ ? ଭିତରୁ ଗୋଟାଏ କୋହ ଉଠିଲା । ନାଃ, ଯା ପଛେ ଚାକିରି, ସେ ଆଉ ପଧାନପଡ଼ାର ନାଁ ବି ଭୁଣ୍ଡରେ ଧରିବ ନାହିଁ । ତେବେ ପୁଲିସ ଗଲେଣି ! ହରି ମିଶ୍ରଙ୍କର ତ ଗାଁ ଯାକ ସବୁରି ଉପରେ ରାଗ । କାହାକୁ କଣ ଧରପଗଡ଼ କରିବ । ସେ ଟିକିଏ ନ ଯିବ କିମିତି ।

ନା, ନା, ତାଙ୍କ କଥା ପଛେ, ଆଗ ପଧାନପଡ଼ା ଗାଁ ଗୋଟାକର ଲୋକ କେତେ ନରମାଖି ହେଉଥିବେ । ଏତେବେଳେ ସେ ନ ଗଲେ ଆଉ ଯିବ କିଏ ? ପଧାନପଡ଼ା କଥା ମନେ ପଡ଼ୁ ବରଜୁର ପେଟ ଭିତରୁ ଗୋଟାଏ ବାମ୍ଫ ବାହାରିଲା । ତୋଟିରେ ଆଉ ମୁଢ଼ି ଗଳିଲା ନାହିଁ । ଆଖି ଯୋଡ଼ାକ ନାଲି ହୋଇ ଉଠିଲା ନିଶା ଖାଇଲା ଭଳି । ସେ ପାଣି ଟିକିଏ ବି ପିଇ ନ ପାରି ହଠାତ୍

ଛୁଆ ହେଲା । ବାପଘରୋଇର ଘୁଣ୍ଟା ବପ୍ କାନ ପଡ଼ିଲା । "ମୁଡ଼ି କଣ ଭଲ ଲାଗିଲା ନା କ ? ଖାଚ ଆପଣେ ?"

"ନାହିଁ, ଆଜି କିଛି ଖାଇବ ନାହିଁ," ବରଜୁ ମନା କରି-ଦେଲା । ପଦାକୁ ଆସି ଦେଖିଲା, ଆକାଶର ଗୋଟାଏ କଣରୁ ଖଣ୍ଡେ କଳା ମେଘ ଆସ୍ତେ ଆସ୍ତେ ଉପରକୁ ଉଠୁଛି । ପୁଣି ଶ୍ରେଦୁଅ ଯାଇ ଅଶିଣ ପଶିଲାଣି । ତେବେ ହେଲେ ବର୍ଷା ଘୁଡ଼ ନାହିଁ । ସେ ବାପଘରୋଇକୁ କହିଲା, "ମେଘ ଉଠେଇଲାଣି, ଆଜି ଜୋର କଲେ ହବ ନାହିଁ ।"

ବାପଘରୋଇ କହିଲା, "ଗୋବିନ୍ଦ ଆସିଯାଉ ତା'ହେଲେ । ଟିକଏ ସଚାର କର ।" ଗୋବିନ୍ଦ ଲୋକ ଗୌରଙ୍ଗର ଘରେ କାମ କରେ ।

"ଗୋବିନ୍ଦ କରିବ କଣ ?" ବରଜୁ ପଚାରିଲା ।

"ତୁମ ସାଥିରେ ଯିବ ପରା ! ଗୌରି କଳାମୁଗ, ହରିଡ଼ ଲକ୍ଷ୍ମୀ ଦେଇସାରି ଯାଇଛନ୍ତି ସଜନା ଛୁଇଁ, ବାଇଗଣ ଆଣିବାକୁ ।"

ବରଜୁର ଚେତା ପଶିଲା—ବାପ ଘରକୁ ଏ ସବୁ ଜେଗୀ ପଥ ସଜଡ଼ା ହୋଇଛି । କହିଲା, "ମୁଁ କଣ ବାପ ଘରକୁ ଯିବ କି ?"

ସ୍ତ୍ରୀ ତାହାର ବୁଝି ପାରିଲା ନାହିଁ । ବାପ ଘରକୁ ନ ଯିବ ତ ଏତେ ତରବର କାହିଁକି ! ଆଜି କେବେ ସେ ଯିବ କୁଆଡ଼େ ? ବାପଘରୁ ପର ମଣିଷ ଆସିଛି ! ଝିଅ ଏଡ଼େ ବାଧକା ହୋଇ ପଡ଼ିଛି ଯିବ ନାହିଁ ?

ବରଜୁ ବୁଝେଇଦେଲା, "ମୋର ଆଉ ଜରୁରି କାମ; ବାପ-ଘରକୁ ତ ଯାଇ ପାରିବ ନାହିଁ !"

ନାହିଁ ? ଡାକ୍ତରଘରକୁ ନ ଯାଇ ଆଉ କଣ ଜାଣୁଛ ଉପାୟ ? ଡାକ୍ତରବାବୁ ଭାବ ମୂର୍ଖ ଆଖିଯୋଡ଼ାକୁ ଚକ ଚକ କରି ପଚାରିଲା, "ଆଉ କେବେ କୁଆଡ଼େ ?"

"କହୁଥିଲି ପରା ଅନୁକୂଳ ହେଲେ ଯିବୁଗନ୍ତ ନାହିଁ ! ଖୁବ୍ ଜଳୁଛି । ସାଙ୍ଗେ ସାଙ୍ଗେ ନ ଗଲେ ନ ଚଳେ । ସେମିତି ଉପାୟ ନ ଥିଲେ କି ମୁଁ ଡାକ୍ତରଘରକୁ ନ ଯାନ୍ତି ?"

ହାତରେ ମୁଠାଏ ଝଜନାହୁଇଁ ଆଉ ଗାମୁଛରେ ବାଇଗଣ ବାନ୍ଧି ଗୌରି ପହଞ୍ଚିଲା । ଡାକ୍ତରବାବୁ ବଉଳକୁ ଜରୁ ପଚାରିଲା ନାହିଁ । ସେ ବାହାରିଯିବା ପରେ ଗୌରିଙ୍କୁ କହିଲ, "ସେ ତ ଗଲେ ନାହିଁ, ତୁମେ ହେଲେ ଟିକଏ ଯାଅ । ତାଙ୍କର ଆଉ କୁଆଡ଼େ ଯିବା ନାହିଁ ।" ଡାକ୍ତରବାବୁର ବଉଳ ଉପରେ ଯେତେ ରାଗ ଆସୁଥିଲା, ସେ ସବୁକୁ କଷ୍ଟରେ ସମ୍ଭାଳି ନେଉଥାଏ । ଆଜି ପୁଣି କୁଆଡ଼େ ସେ ଅନୁକୂଳ କରି ବାହାରିଛି । ଏତେବେଳେ ଯିବାଟା ଭଲ ନୁହେ ।

ଡାକ୍ତରଙ୍କୁ ଗଲ ଗୌରି । ଆଉ ବଉଳ ଗ୍ରାମର ପ୍ରଧାନ ପଣ୍ଡାକୁ । ସେଇ ତା'ର କେତେ ଭଲ ମନ୍ଦ ହସ କାନ୍ଦର ସାକ୍ଷୀ ଗାଁଟି । ତା'ର କୋଳରେ ବଢ଼ି ସେ ମଣିଷ ହୋଇଛି । ତା'ର ଗୁଣ୍ଡକୁ ଚାଷ ଫସଲ କମେଇ ଖାଉଛି । ତା'ର ମାଟିତଳର ପାଣି ପିଉଛି । ଏମିତ ସ୍ଥଳରେ ଥିବାବେଳେ ତ ସେ କେତେ ଗାଁ ଗଣ୍ଡା ଦେଖିଛି । ଅଟେଇ ଅଧେ ସହରର ବଜାର ବି ବୁଲି ଆସିଛି । ପ୍ରଧାନପଣ୍ଡା ଭଳି ତାକୁ ତ ଆଉ କେଉଁ ଗାଁ ଲାଗି ନାହିଁ !

ଆକାଶ କଣର କଳା ମେଘଖଣ୍ଡ ବଉଳର ମୁଣ୍ଡ ଉପରେ ପ୍ରସ୍ରାଏ ପାଣି ପକାଇ ଦେଇ ଦକ୍ଷିଣ ଆଡ଼କୁ ଖସି ଖସି ଚାଲିଗଲା ।

ସେହି ବାଟେ ପୁଣି ଆଜି ଦୁଆରକୁ ଲେଉଟିବ । ବରଜୁ ଆଜି ଏଣୁ ସମସ୍ତ ଭଳି ଆଗପଛ ବିଚାର ନ କରି ଚାଲିଛି । ଧାନ ଫସଲଟା ଏ ବର୍ଷ ଭଲା ଅଧିକେ ମନ୍ଦ ନୁହେଁ । ସବୁଆଡ଼େ ସବୁଜ ଧାନ କିଆରୀରୁ ଡେଙ୍ଗା ଡେଙ୍ଗା ଗଛଗୁଡ଼ାକ ଛିଡ଼ା ହୋଇଛି । ଯେମିତି କି ଲକ୍ଷ ଲକ୍ଷ ହାତ ଟେକା ହୋଇଛି ବରଜୁ ପ୍ରଧାନକୁ ଭେଟ ଦେବା ପାଇଁ । ଏଣୁ ଧାନ କିଆରୀର ଭେଟ ବରଜୁ ପିଲା ଦିନରୁ ଆଜ ଯାଏ ପାଇ ଆସିଛି । ଏଣୁ ଭେଟ ପାଇ ସେ ନିଜ ଘରେ ମେମ୍ବର, ନିଜ ଗାଁରେ ମନ୍ତ୍ରୀ । ସୁଖ ସାଙ୍ଗଯୋଗଠାରୁ ଗାଁ କଳଆପାଖେ ଲୋକେ ତାକୁ ମାନନ୍ତି । କିଆରି ଭିତରେ ପାଣି ଜମିଛି । ଠାଏ ଠାଏ ହିଡ଼ ତଳେ ଭଙ୍ଗା ହୋଇ ଗୋଟିଏ କିଆରୀରୁ ଆର କିଆରୀକୁ ପାଣି ବୋହି ଯାଉଛି । ଧାନଗଛ ଗହଳ ଭିତରେ କେଉଁଠି ପୁଣି ସେତ ଉଜାଡ଼ିଛି ଓଟେଇ ଗାଈଟା, ଗୁଣ୍ଡୁ ଦୁସାନି ପକେଇ ଆସିଛି । ପ୍ରଜା ସାଙ୍ଗରେ ଖଣ୍ଡିଟା ହେଉଛି ଓଜନିଛି । ବରଜୁ ବାଟ ଚାଲୁ ଚାଲୁ ହି, ଡ଼ ଭଙ୍ଗା ମୁହଁରେ ମାଟି ଦେଇ ଗୁଣ୍ଡି ପାଣି ଧାର ବନ୍ଦ କଲା । ନିଜ ବାଟ ଛାଡ଼ ଗାଈଟାକୁ ଅଟେଇ ଡଉଡ଼ିଲା ପଡ଼ିଆ ଉପରକୁ । ବାଟ ମଝିରେ କେଉଁଠି କଣ୍ଟା ଡାଳଟା ପଡ଼ିଥିଲା, ତାକୁ ଉଠାଇ ଦୂରକୁ ଫୋପାଡ଼ି ଦେଲା । ବାଟ ଚାଲିଲେ ଏଇଟା ତାର ଅଭ୍ୟାସ ।

ଅଧ କୋଶେ ଦୂରରୁ ଗହୀର ଆର ପଟେ ବହୁଗ୍ରା ନଈର କସର ବାଲି ଉପରେ ସରୁ ପାଣିଧାରଟା ଦିଶିଲା । ପାଣି ଏସି ନଈ ପାଆକରେ ଅଛି । ବନ୍ଧଭଳେ ପଧାନ ପଡ଼ାର ଘରଗୁଳ ବଣ୍ଣୁ ନ ହିଁ । ଗାଁ ମୁଣ୍ଡ ଢ଼ିଙ୍କା ଉପରେ ସେହି ଅଶ୍ୱ ତମିଖ ଗଛଟାର ଅଗ ପାହୁଣିଆ ହୋଇ ପଡ଼ିଛି । ରଥ ଦଉଡ଼ା ଭଳି ସେ ସମସ୍ତେ ଯେମିତ ବରଜୁଙ୍କୁ ଆଜ ଝିଙ୍କି ଓଟାର ନେଉଛନ୍ତି । ସେ ଓଟସଂର ତାକୁ ଖାଲି ଖମା ଜଣାଗଲା ନାହିଁ । ଚନ କୋଶ ବାଟ ଗୁଲି ସେ ଯେ କେତେବେଳେ ବରୁପା କୂଳରେ ପହଞ୍ଚିଲେଣି, ସେ କଥା ତାର ହେଜ ନ ଥିଲା । ସଢ଼କବାଟ ଟିକଏ ବୁଲିଣି ପଡ଼ିଥାନ୍ତା ।

ବରୁପାକୂଳରେ ବୁଡ଼ା ନଟ ତଟେଇ ଖଣ୍ଡେ ସାପୁଆ ଡଙ୍ଗାରେ ଡଙ୍ଗାଏ ମଣିଷ ପୂରାଇ ନାଆ ଫିଟେଇବାକୁ ଯାଉଥିଲା । ଦୂରରୁ ତାକୁ ଚିହ୍ନି ପକେଇ ଡଙ୍ଗା ଅଟକେଇ ଡାକିଲା, "କିଏ ? ପ୍ରଧାନ ପୁଅ ? ବରଜୁ ! ଏତେ ଦିନକେ ମନେ ପଡ଼ିଲା ପରା ।"

ବରଜୁ କହିଲା, "ଦଣ୍ଡବତ ମଉସା, ଜଣେ ଜରୁର, କହ । କେତେବେଳେ ହେଲେ ତ ଜଞ୍ଜାଳ ଘୁଞ୍ଚିଲା ନାହିଁ ।"

"ଜଞ୍ଜାଳ କାହାକୁ ଘୁଞ୍ଚିଛି, କହିଲ ? ତା' ହୋଇ ଜଣ ଆପଣା ଗାଁ ଘର ବାର କିଏ ପାସୋରିଛି ଏବେ ? ହଉ, ଭଲ କଲ, ଆଇଲ । କଣ ଦେଖିବ, ଘର ଘରକେ କାନ୍ଦ କୋବାଳି ପଡ଼ିଛି ।"

ଡଙ୍ଗା ଉପରକୁ ଉଠି ବରଜୁ ପଚାରିଲା. "କାହିଁକି, କଣ ହେଲା ?"

"ଆଉ ହବ କଣ, ପୁଅ ? ଗ୍ରାମ ପଧାନ ଥିଲେ କି ଏ କଥା ପୁଣି କାନ ଶୁଣନ୍ତା, ନା ଆଖି ଦେଖନ୍ତା ? ଉଦ ସୁତାର, ରଥ ମଲକ,

ମଣି ସ୍ୱାଇଁ, ଧରମା ଖେଳ ବୁଝ ଜଣ ହାର କରି ପଡ଼ ଥାନାକୁ ଚଣା ହେଲେଣି । ଆଜ ଯାହା ମାଡ଼ ହେଉଛି, ଭଣ ଜନ୍ମର ପୂଜା ।"

ନଟ ଉଚରେଇ ଶ ମ ପ୍ରଧାନଠାରୁ ପାଞ୍ଚ ଦଶ ବର୍ଷ ସାନ । ବରଜୁକୁ ପୁଅ ନେଖା କରେ । ବର୍ତ୍ତମ ଶ୍ରେଷ୍ଠ ପୁଣି ତାର ନଜ ନାଁଠାକୁ ଆଉ ଜଣକ ମୁହଁରେ ଶୁଣି ବରଜୁର ମନ ହିଏ ନରମା ଧର ଆସିଥିଲା । ତେବେ ପୁଲିସ ଗ୍ରହଣ କରିବା କଥା ଠାବେ ବହୁ ପାଦନ୍ଧର ସୁଖ ପଡ଼ ତାର ସବୁ ନାଡ଼ରେ ରକ୍ତ ଛୁଟିଲା । ଆଗରୁ ହର ମିଶ୍ରଙ୍କ ଘର ଚୋରି ହୋଇଥିବା ଖବର ପାଇ ସେ ଯାହା ଅନୁମାନ କରିଥିଲା, ତାହା ତ ସବୁ ଘଟି ଯାଉଛି । ଅଜ ତେବେ ସେ କାର୍ତ୍ତିକ ଯିବ, କେଉଁ ମୁହଁରେ ?

ବରଜୁକୁ ବୁଝିବା ବଳିଲା ନାହିଁ । ସବୁ କଥା ବୁଝି ପାରୁଥିଲେ ବି ସେ ପୁଣି ଉଚରେଇକୁ ପଚାରିଲା, "କାର୍ତ୍ତିକ, ସେ କଣ ଦୋଷ କଲେ କି ?"

"ନାଟ୍ଟୁ ତେବେ ଶୁଣି ନ ପାରି ଚମେ ! କହେ, ହର ମିଶ୍ର ଘରୁ ଚୋରି ଯାଇଛି । ସେ କଣ ଗାଁରେ କାହାକୁ ରଖି ଦବ ?

"ଏଇ ଚୁରି କଣ କଣ ଚୋରି କରିଥିଲେ ?"

"କଏ କହିବ ସେ କଥା ? ଲକ୍ଷ୍ମୀମାନ୍ତ୍ୟା ତ ନାରାୟଣଙ୍କୁ ଛୋଟର ନୁହେଁ । ତେବେ ପୁଲିସ ସନ୍ଦେହ କରି ଧରି ନେଇଛି ।"

"ଗାଁ ଭିତରେ କଣ ଆଉ କେହି ନ ଥିଲେ, ଖାଲି ଏହି ଦୁଇଜଣଙ୍କ ଉପରେ ସନ୍ଦେହ ହେଲା ?"

"ଆଜ୍ଞେ ବାବୁ, ଗାଁର ପାଇକ ସମସ୍ତଙ୍କଠୁ ଖାଲି । ସେମିତି ଦଣ୍ଡିକା ହୋଇଥିଲେ ପୁଲିସ ନା ପୁଲିସର ଗୋସେଇଁ ଭଲା ପାଖେ

ପଣନ୍ତା ! ଯଦୁ ତଳେଇଙ୍କି ଓ ମିଶ୍ରେ ଗୁଣ୍ଠିବେ ବୋଲି ବାହାଙ୍କ ନ ଥିଲେ କି ? ପୁଲିସର କୁଆଡ଼େ ସାହସ ହେଲା ନାହିଁ । ଯେତେ ହେଲେ ଚଳପକ୍ଷ ଘରଟାଏ ଆଗକୁ ଭଲ ଥାଏ କ ମନ୍ଦ ଥାଏ । ପୁଲିସ ବୋଲି ଛାର କଣ ଡର ଭୟ ନାହିଁ ? ବାଘର ତ ଫାଗକୁ ଡର !”

ଢ଼ଙ୍କାଟା ଆଉ କୂଳରେ ଲଗିଲା । ବରଜୁ ଉତ୍ଥେଇ ପଡ଼ ଡଙ୍ଗା ଭଡ଼ା ପଇସା ଦେବାକୁ ଯାଇଥିଲା । ତଟେଇ କହିଲା, “ତମଠୁଁ କଣ ପଇସା ନେବି ପୁତ ? ତମ ବାପ ପାଖେ ତ ମୁଁ କେତେ ବାଟକେ ଧାଙ୍ଗୁଆ ହୋଇ ରହିଚି । ରଖ, ପଇସା ରଖ । ତୁମେ ଯାହା ଯାଚିଲ, ସେଇ ମୋର ବହୁତ ।” ବରଜୁ କହିଲା, “ନାହିଁ ମଉସା, ସମସ୍ତେ ତ ପଇସା ଦେଲେ । ମୁଁ ନ ଦେବି କାହିଁକି ? ତମେ ମୋ ବାପା ପାଖେ କଣ ଧାଙ୍ଗୁଆ ଥିଲ ବୋଲି ମୁଁ ତମ ପାଖେ ଧାଙ୍ଗୁଆ ରହିବି କାହିଁକି ? ସେ କଥା ହବ ନାହିଁ । ପଇସା ନବାକୁ ହବ । ନଇଲେ ମନ ଭରେ ତମ ବାଉରେ ମୋର ଲଙ୍କାମଣ୍ଡିର ଗଛ ହୋଇ ପୁଣି ଶୁଝିବ କିଏ ?”

“ଯୋଡ଼ାଏ ପଇସାକୁ ଏତେ କଥା ? ହଉ ଦିଅ ତା’ ହେଲେ ।” ତଟେଇ ପଇସା ନେଇ ତା’ ଅଣ୍ଟା ଖିସାରେ ରଖିଲା ।

ବନ୍ଧତଳକୁ ଗଡ଼ ସ୍ୱର ଖଣ୍ଡ ଚାଲି ହେଉଁଲେ ପଧାନପଡ଼ା । କିଏ ଜଣେ ଏଲି ଭିତରୁ ବାହାରି ଆସି ତାକୁ କୁଣ୍ଢେଇ ପକେଇ କହିଲା, “ବରଜୁଆ ଭାଇ, ତମେ ଆସିଚ !” ଲୋକଟା ମୁହଁରୁ ଆଉ କିଛି କଥା ବାହାରିଲା ନାହିଁ, ଖାଲି ଆଖି ଯୋଡ଼ାକରୁ ଝର ଝର ହୋଇ ଲୁହ ଗଡ଼ି ପଡ଼ିଲା । ଲୋକଟିଙ୍କ ମୁଣ୍ଡକୁ ଛାତିରେ

ଜାଳ ବରଜୁ ବସ୍ତ୍ରେ ବାଳ ଭୂମ୍ପ ଉଣ୍ଡିଲା । ତା ପରେ କହିଲା, "ଯଦୁ, ମତେ ତ ହେଲେ ଟିକିଏ ଆଗରୁ ଖବର ଦେଲ ନାହିଁ ? ମୁଁ କଣ ତୁମର କେହି ନୁହେଁ ?"

ଯଦୁ ବଳେଇ ପିଲାଙ୍କ ପରି କାନ୍ଦି କାନ୍ଦି ହୋଇ କହି ଉଠିଲା, "ତମେ ଆମର କେହି ନୁହଁ, ବରଜୁଆ ଭାଇ ! ଆଜି କେବେ କିଏ ଆମର ? କିଏ ଆମର, କହ; କହ ବରଜୁଆ ଭାଇ ।"

ଗାଁ ଭିତରକୁ ଦୁହେଁ ଖସିଲୁ ଖସିଲୁ ଯଦୁ କହିଲା, "ମିଶ୍ରେ ଯଉଁ ଫାନ୍ଦ ପକେଇ ଥିଲେ, ସେଥିରେ ତ ଆମେ ସମସ୍ତେ ଗୁନ୍ଥା ହୋଇଥିଲୁ, ତୁମକୁ ଖବର ଦେଇ ସେହି ଫାନ୍ଦରେ ପକାଇବାକୁ ମିନା ଚାହିଁଥିଲୁ । ଆସିଲେ ଅବା କଣ କରନ୍ତ ତମେ ।"

"ସେ କଥା ସତ । ମୋ ହାତରେ କଣ ଥୁଅନ୍ତା ! ତେବେ ପୁଲିସକୁ ଆମ ଗାଁର ସବୁ ହାଲ ଆଗରୁ ଟିକିଏ କହିଥିଲେ—"

"ବାଜଲା ହେଲ ଭାଇ, ପୁଲିସ ହଉ ମିଶ୍ରଙ୍କ କଥା ନ ଶୁଣି ତୁମ ଆମ କଥା ଶୁଣନ୍ତା ! ଆମେ କଣ ତାଙ୍କ ଝିଅ ବାହାଘରକୁ ଦଶ ଭାର ଆମ୍ବ କଦଳୀ ଉଠେଇ ପାରିବା, ନା ଘରଖର୍ଚ୍ଚକୁ ତିନ ଭାର ଚୂଡ଼ା ଗୁଡ଼ କ ଯୋଗେଇ ପାରିବା ?"

ଗାଁଟାଯାକ ବୁଲିକି ପଡ଼ିଗଲା, ବରଜୁ ଫେରି ଆସିଛି । ଝକଡ଼ି ନେଳମଣିକୁ ଡାକି କହିଲା, "ଭାଇ ଆସିଛନ୍ତି । ମୁଁ ଯାଏଁ ବନେଇ ଖଟୁଆକୁ କହି ମାଛ ଦି'ଟା ଦେଖେଁ । ନେଳମଣି ଡାଲି, ସରୁ ଚାଉଳ, ଘିଅ ଆଣି ବେଢ଼ଣ୍ଡିର ପାଇଁ ଚନ୍ଦ କରି ସେଥେଇ ଯୋଗାଡ଼ କଲା ।

ଜଦ ସୂତାଉ, ଉଅ ମଳକ, ମଣି ସ୍ୱାଇଁ ଧଳମା ଶ୍ୱେଇ ସବୁଝ ଘଞ୍ଚକୁ ବରଜୁ ଗଲ। ତାକୁ ଦେଖି ମାଇପେ ମୁଢ଼ଣା ଟାଣି ଘର ଭିତରୁ ବାହୁନା ପକେଇଦେଲେ। କିଏ ଅଛୁ ଯେ ବରଜୁକୁ ସନାମନା କରିବ। କିଏ ତା' ସାମ୍ନାରେ କଥା କହିବ ଡରିକରି ? କିଏ ତାକୁ ହେଁସ ପାରିଦେଇ ବସାଇବ ? ପାନ ଭାଙ୍ଗିଦେବ ? ଇମିତି କେତେ ବାହୁନା। ବରଜୁ ସମସ୍ତଙ୍କୁ ବୁଝାଇ କହିଲା, "ଦୋଷୀକୁ ସିନା ଦଣ୍ଡ ମିଳିବ, ସଂସାରରେ କଣ ଭଅଁ ଦେବତା ନାହାନ୍ତି ?"

"କେଉଁଠି ଭଅଁ ଦେବତା ଅଛନ୍ତି ? କହିଲ ଭାଇ ? ଥିଲେ ଅବା ଆଜ କାହିଁ ଗାଁରେ ଥିବେ। ଆମ ଗଧାନ ପଣ୍ଡାଙ୍କର ଥୋଇ ପଡ଼ ତ ଲାଗୁନି"—ଯଦୁ ବଳେଇ ପଚାରିଲା। "ସେ କଥା କାହିଁକି କହୁଚ ଯଦୁ। ଭଅ ଦେବତା ନାହାନ୍ତି କେଉଁଠିରେ ? ତାଙ୍କ ହୁକୁମରେ ତ ଦୁନିଆ ଯୋଡ଼ାକ ଚଳୁଚି। ତାଙ୍କ ବିନା ହୁକୁମରେ ତ ଧୂଳି ଟିକିଏ ଏ ପାଖ ସେ ପାଖ ହେବାକୁ ସୁବ ନାହିଁ ! ତାଙ୍କ ସାହାଯ୍ୟ ନ ହେଲେ ଭୁଣ୍ଡଲୁ କା●ା● ନ ଗଲେ କଥା ବାହାରିବ ନାହିଁ ! ସେଥିପାଇଁ ପର ଭକ୍ତମାନେ ●ଠୁରେ ବସିବାକୁ ତାଙ୍କୁ ଡାକନ୍ତି ! ତାଙ୍କ ଦୟା ଥିଲେ ପୁଣି ଡର ଭୟ କଣ ! ସେ ନାହାନ୍ତି ବୋଲି କହୁଲେ ଆଜ ସଂସାର ଅଛି, କି ଆମେ ଅଛୁଁ ବୋଲି କହିବା କମିତ ?"

"ଭାହିଁକି ଭାଇ, ସଂସାର ତ ଆମେ ଦେଖୁଚୁଁ, ନିଜେ ଅଛୁଁ ବୋଲି ବୁଝୁଚୁଁ ! ଭଅଁ ଦେବତା ଅଛନ୍ତି ବୋଲି ଉମଭଲ ଦେଇଜଣ ଭଲଲୋ●ଙ୍କଠାରୁ ଶୁଣୁଚୁଁ ସିନା ! ତାଙ୍କର ଶବ୍ଦ ଛନ୍ଦ ତ କାହିଁ କେଉଁଠି ମିଳୁ ନାହିଁ ! ଖାଲି ମାଟି ପଥର କି କାଠ ପିତଳର କେଇଟି ରୂପ ଦେଖିବା ଛଡ଼ା ଆଉ କଣ ?"

ବଉଳୁ କାନରେ ପଡୁ ଦଫେଦାରର କଥାଗୁଡ଼ାକ ପଶୁ ନ ଥାଏ । ଗାଁଟାରୁ କେତେ ଲୋକ ଚାଲି ଯେଉଁ ଗଲେଣି । ଯାହାଙ୍କୁ କେତେ ଦୁଃଖ ସୁଖ ସେ ପଚାରୁଛି । କେତେ କଥାର ଜବାବ ଦେଉଛି । ହର ମିଶ୍ରଙ୍କ ଘରୁ କେତେବେଳେ ସବୁ କଂସା ବାସନ ଚୋରିଗଲା ? ଚୋର ପଶିଲା କେଉଁ ବାଟେ ? ଆଜଯାଏ ତ ପଧାନପଡ଼ାରେ ଚୋର ଶୁଣା ନ ଥିଲା, ଆଜ ହେଲା କାହିଁକି ?

ରୂପ ସେନା କହିଲା, "ଚୋରି ନ ଥିଲା କାହିଁକି, ଛନୁଟାଏ ଛୁଚୁଆଁ ଘର ଯାଉଛି କି ନାହିଁ, ମୋ ପିଡ଼ା ଉପରୁ ପଲ କଖାରୁଟାଏ କିଏ ନେଇଗଲା । ମୋ ଘରେ ବାସନକୁସନ ଥିଲେ କଣ ଛାଡ଼ି ଯାଇଥାନ୍ତା ! ପଧାନପଡ଼ାରେ ଆଉ କାହାର କଣ ଅଛି ଯେ, ଚୋର ଯିବ ? ଯାହା ଘରେ ଥିଲା ତା ଘରୁ ଗଲା । ଏଥିପାଇଁ କଣ ଆମେ ସମସ୍ତେ ଚୋର !"

ନାରଣ ଲେଙ୍କାର ପାଖରେ ଗୋଟାଏ ବାଉଁଶ କଣ୍ଡା ପଡ଼ି ଥାଏ । ସେ ସଳଖ ଠିଆ ହୋଇ ନ ପାରି ଠେଙ୍ଗାଟାରେ ଭର ଦେଇ କହିଲା, "ଭମର ଘର ତ ସାକ୍ଷୀ ହୋଇ ସମସ୍ତଙ୍କୁ ଧରେଇ-ଛନ୍ତି, ଆଉ ପଚାରୁଛ କାହାକୁ ?"

ଚାଳୁବ ହୋଇ ବଉଳ କହିଲା, "କିଏ ଛକଡ଼ ?"

"ଛକଡ଼ ନୁହଁ ତ ଆଉ କିଏ ? ମିଶ୍ରଙ୍କ କଥାରୁ କଣ କେତେବେଳେ ସେ ବାହାରି ହେଲାଣି ? ସେଇ ତ ସବୁ ନାଟର ଗୋବର୍ଦ୍ଧନ ।"

ପୁଣି ଛକଡ଼ ! ବଉଳୁର ମୁଣ୍ଡଟା ଭଉଁରି ପରି ବୁଲିଲା । ଛକଡ଼ ଗାଁ ଲୋକଙ୍କୁ ଚାଲାଣ ଦେବାରେ ସାକ୍ଷୀ ହୋଇଛି ।

ହରି ମିଶ୍ରଙ୍କ ବୁଦ୍ଧିରେ ! ତାଙ୍କୁ ସେ ଏତେ କଣ ବୁଝାଇଥିଲେ । ଆଜି ଯାଏ ଛକଡ଼ି ବୁଝିଲା ନାହିଁ । କେବେ ଆଉ ବୁଝିବ ସେ ?

“ଧାନ ବେଳ ତ ଗଡ଼ିଗଲାଣି । ଦଶପୁରରେ ପହଞ୍ଚିବାକୁ ରାତି ହୋଇଯିବ । ମୁଁ କେବେ ବାହାରେ ।”

ସକାଳ ଉଠିରୁ ମେଘଟା ପୁଣି ଉପର ଉଠିଲୁ ଫେରିଲାଣି । ପବନ ଗୁମ୍ ମାରି ରହିଛି । କିଛି ସମୟ ପରେ ପୁଣି ଜୋର ବର୍ଷା ହେବ । ରୂପ ଜେନା, ଜଗୁ ସୁଆର ଜଗର ଦଲେ । “ଏ ବୁଆଡ଼ କଥା. ଏଥର ଯୋରରେ ମେଘ ଧରିଛି । ଘଣ୍ଟା ଭିତରେ କଣ ହବ ନ ।” ଯଦୁ ଭୁମା ରହିଲା ।

ବରଜୁ ଆସିଥିବା ଖବର ପାଇ ଛକଡ଼ି ନେହମଣିକୁ ଖବର ଦେଲା । ନେହମଣି ସକାଳ ରନ୍ଧା ଲଗେଇ ବେଢ଼ଣୁର ପାଇଁ ବାନ୍ଧି ବସିଲା । ଛକଡ଼ିକୁ ଡାକି ପଚାରିଲା, “ସେଇଙ୍କି ଦେଖିଥିଲ କି ? କାହିଁ ଏତେବେଳଯାଏ ତ ଆସିଲେ ନାହିଁ ।”

“ଜାଣେ ନା ସକାଳୁ ଜଣ ଡାକିବାକୁ ଯିବ ?” ଛକଡ଼ି ଉତ୍ତର କଲା ।

“ଗାଁ ଭିତରକୁ ଆସିଥିଲେ ତ ଆଗ ଆସନ୍ତେ ଏଇଠିକୁ । ଗଲେ କୁଆଡେ ?”

“ମଲ୍ଲ ଦଳେଇ ସାଥିରେ ବାଇଶପାଲ୍ଲ ପଟେ ସେ ବୁଲି ଯାଇଛନ୍ତି । ବେଳେ ଏଣିକି ଆସିବେ ନ ।”

“ତେବେ ଆସିବେ ବୋଲି ଏତେବେଳଯାଏ ତୁମେ ଠିକଣା କରି ବୁଝିନ ।”

"ହଁ, ବୁଢ଼ୀକି, ଆଉ ଖାଲି ମିଛରେ କହୁଚ !" ଝରଜୁ ତ ତାଙ୍କୁ ବରାବର କହୁଛନ୍ତି, ଯେତେବେଳେ ଇଚ୍ଛା ଆସିବ ସେ ତା' ଗାଁକୁ, ତା ଘରକୁ ଯିବ । କୁହୁଆଁ ମଙ୍ଗଳ ଭଳି ଝକଡ଼ ତାକୁ ଡାକିବ କାର୍ତ୍ତିକ । ଆଜି ନ ରହିଲେ ବି ଟିକଏ ତ ହେଲେ ଘରଆଡ଼େ ମୁହଁ ମାଡ଼ିଯିବ । ସତେ ଜରି ମିଶ୍ରେ ଯାହା କହନ୍ତି, ଲୁଚକିଅ ସେହି ସ୍ପେଟ ବୁଝି ଅଜପାକେ ଗଲ ନାହିଁ । ବାଟକେଢ ଯଦୁ ଦଳେଇଙ୍କ ଦେଖି ପଚାରିଲେ ବୋଲି ତାର ସଙ୍ଗତେ ସିଧା ଚାଲିଲେ ବାଉରିସାହିକୁ । ଆଗ ଜଣ ନଜ ଘରକୁ ଆସିବେ, ବରଷକ ପରେ ଗାଁକୁ ଫେରିଛ ଯେଉଁ କଥାକୁ ସେଇ ଯଥା ।

ଏବା ଭିତରେ ଝକଡ଼ ଘରଟାର ଚେହେରା ଅବଳ ବଦଳ ଯାଇଛି । ବାଣ୍ଡ ପିଣ୍ଡାରେ ଏକେଇ ଜଣ୍ଡ କଠା ପଥର ପଡ଼ାଇ ଚଳ ସାହାଳୀଟାକୁ ଭୁଲିଆ ଅଠ୍ କରିଛି । ସେତକ ସଲକୁ ଦେଖେଇ ତାହାଠାରୁ ସାହାସଟା ଗାଇବ ନେଲି ଝକଡ଼ ମନ ଉଚ୍ଛନ୍ନ ହେଉ ଥାଏ । ଭେଣେ ଖାଲି ବାଡ଼ପଟ ଦାଣ୍ଡପଟ ହେବା ଛଡ଼ା ତାର ଆଉ କିଛି ଉପାୟ ନାହିଁ । ଗାଁ ଭିତରେ ସେ ଏବା ଜରି ମିଶ୍ରଙ୍କ ପଟର ଲୋକ । ଆଜି ପୁଲିସ ତଦନ୍ତ ପରେ ଗାଁ ଭିତରେ କେତେ କଥା ଲଗେଇ ତା' ନାଁରେ ଲୋକେ କହୁଥିବେ । ତାକେ ତ କାହାରି ଦୁଆରକୁ ଯାଏ ନାହିଁ, କାହାରିକା ଆଡ଼ଆଖିରେ ଚାହେଁ ନାହିଁ । ସ୍ପେଟ ଲୋକଗୁଡ଼ାଙ୍କ ପାଖରେ ବସିଲେ ଅବା ତାର କି ଲଭ ! ଝରଜୁ ଆଗେ ଯେମିତ ତାକର ଦୁଆରକୁ ଧାଉଁ ଥିଲା, ଆଜି ବ ସେମିତ । ମିଶ୍ରେ ଯାହା କହନ୍ତି, 'ଘରେ ନାହିଁ ଚୂଡ଼ାଭଜା, ବେଟା କରୁଛି ଦୁର୍ଗାପୂଜା ।'

ଝରଜୁ ଜାହା ପିଣ୍ଡାରେ ବସିଥିବ କି ଜାହା ଓଳତଳେ ଛିଡ଼ା ହୋଇଥିବ । ଝକଡ଼ ଏତେ ଲୋକଙ୍କ ଭିତରେ ତାକୁ ଡାକିବ ଯାଇଁ

କମିଲ । ମେଘଅନ୍ଧାର ଘୋଟି ଆସିବା ଫଳରେ ଫଳରେ ଛକଡ଼ି ମନଟା ବି ଅନ୍ଧାରିଆ ହୋଇ ଆସିଲା । ସତେ କଣ ବରଜୁ ଗାଁ ଭିତରକୁ ଆସି ନିଜ ଘରକୁ ଆସିବ ନାହିଁ ! ମୁନ୍‌ସିବାବୁଙ୍କପାଇଁ ହରି ମିଶ୍ରେ ଆଜ ନାଥ ଖଟୁଆଙ୍କୁ ବରାଦ କରି ଦୁରୁପା ନଗଦରୁ ମାଛ ମଗେଇଥିଲେ । ତା'ରେ ସାମାବାବୁଙ୍କ ଘରଠାରେ ଯାହା ତ ହୋଇଗଲା, ଛକଡ଼ି ଘରକୁ ସେଇ ମାଛଟା ଦେଇଛନ୍ତି ବୁଝିବାନ ଖାଇଲେ ସରିବ ନାହିଁ । ଗୌରଙ୍କ ଭଣଜା ବାବୁ ଗାଡ଼ିଆରୁ ସେଦିନ ଯେଉଁ ମାଛ ଧରି ଦେଇଥିଲା, ସେଥିରୁ ପୁଞ୍ଜାଏ ଭଲ ଏ ଗୋଟାକ ପାଖରେ ଲାଭ କଅଣ ହବ ! ସେଥିରୁ ଯେଉଁ ବଡ ମଞ୍ଜି ବାହାରିଛି ତାକୁ ଖାଣ୍ଟି ସୋରିଷ ତେଲରେ ଝୋଳ ଖଣ୍ଡ ନେଇମଣି ରାନ୍ଧି ରଖିଛି । ବରଜୁ ଖାଲି ଦୁଆରେ ଗୋଡ଼ ଦେଲେ ଏଣେ ଭାତ ବଢ଼ା ହେବ ।

ତେବେ ବରଜୁ ଆଜ ଦୁଆରେ ଗୋଡ଼ ଦେଲା ନାହିଁ । ସେଇ ମାଛତକ ଆଉ ଥରେ ତେଲରେ ଭଜୁମେଇ ଦେବାକୁ ଛକଡ଼ି ନେଇମଣିକୁ ବାଣ୍ଡିଶାଳ ଦୁଆରେ କହୁଛି. ତାଣ୍ଡରେ କେତେ ଲୋକଙ୍କର ପାଟି ଭୁଣ୍ଡ ଶୁଣି ସେ ବାହାରକୁ ଆସିଲା । ବରଜୁ ସବୁ ଲୋକଙ୍କ ବାହାରେ ଜାତଟା ଗଳେଇ ଶୁଣୁଛି । ତା' ସାଙ୍ଗରେ ଆଉ ପିଣ୍ଡ ଧରି ବାଣ୍ଡମଣ୍ଡିରେ ବୁଲୁଛନ୍ତି, ବୋଧେ ଏ ଜ ଘଟଣ ଜଣ ଗାଁ ଲୋକ ।

ଛକଡ଼ି ଭିତରେ ବରଜୁର ନଜର ପଡ଼ିବା ଆଗରୁ ସେ ଟିକିଏ ଖୁଣ୍ଟ ପାଖକୁ ଅନ୍ତେଇ ହୋଇଗଲା । ଦୁଆର ମୁହଁ ଦେଲେ ତ ବଳେ ଘର ଭିତରକୁ ଉଠି ଆସିବ ।

ଘରଦ୍ୱାରଭିଟକୁ ଉଠି ଆସିବା ଦୁଃଖରେ ଆଉ, ବଇଜୁ ଦୁଆର ମୁହଁକୁ ଥରେ ଆଖିରେ ଚାହିଁଲା ନାହିଁ । ଅଚାନ୍ଧା ଲୋକ ଭଳି ଆଗକୁ ମାଡ଼ି ଚାଲିଲା । ଛକଡ଼ି କିଛି ବୁଝି ପାରୁ ନ ଥାଏ । ତେବେ ଜଣେ ହରି ମିଶ୍ରଙ୍କ ଘରଆଡ଼େ ସେ ଯାଇଛି କଥାଭାଷା କରି ଫେରିବ ।

ଯଦୁ ବଡ଼ଲୋକ ଶେଷରେ ତାକୁ ପଚାରିଲା, "ସତରେ ଜଣେ ଏଡ଼କ ମେଘରେ ଚାଲି ଯିବ ?" ବଇଜୁ ହସିଦେଇ କହିଲା, "ଆଉ ମିଛରେ କମିତି ଯା'ନ୍ତି ଯଦୁ ?"

ଛକଡ଼ି ସବୁ ବୁଝିପାରି ଏଥର ମୁହଁ ଟାଣ କରି ବଇଜୁ ଆଗକୁ ଯାଇ ଦଣ୍ଡବତ ହେଲା । "ଘରକୁ ଜଣେ ଆସିବ ନାହିଁ କି ଭାଇ ?"

ସାନ ଭାଇକୁ ଦେଖିଲେ ବଇଜୁର ଯେମିତି ଆଗ୍ରହ ହୁଏ, ଛକଡ଼ି ଆଜ ସେ କଥା ଦେଖିଲା ନାହିଁ । ଲୋକେ କହନ୍ତି ଶୁଖିଲା ହସ ହସନ୍ତି ସେଇଭଳି ହସ ବି ବଇଜୁ କେବେ ଶିଖି ନାହିଁ । ସେ ଛକଡ଼ିକୁ ଚାହିଁ ଚିହ୍ନି ନ ପାରିଲା ଭଳି କହିଲା, "ଆଉ ଥରେ ଆସିବ, ଏଥର ନୁହଁ ।" ଆଉ ପଦେ କଥା କହିବାକୁ ଛକଡ଼ିର ସାହସ ନ ଥିଲା । ସେ ଖଣ୍ଡେ ଶୁଖିଲା କାଠ ପରି ପଛରେ ରହିଗଲା ।

ଗାଁ ମୁଣ୍ଡରୁ ବଇଜୁ ସମସ୍ତଙ୍କୁ ଲେଉଟାଇ ଦେଲା । ଖାଲି ଯଦୁ ବଡ଼ଲୋକ ନଈକୂଳପାଖେ ଆସି ପଛକୁ ଚାହିଁ କହିଲା, "ଦେଖିଲୁ ଭାଇ, କେଡ଼େ ମେଘ, ଏଥିରେ ଭଲ କଏ ଯାଏ ?"

ପାଖରେ କେହି ଲୋକ ନ ଥିଲେ ବୋଲି ବଇଜୁ ତାକୁ ଭୁମା ଭୁମା କହିଲା, "ଏତେ ଦିନକେ ଗାଁକୁ ଆସିଲି । ମତେ କାହିଁକି

ତେବେ ଜମାକୁ ଭଲ ଲାଗୁନ ଯଦୁ । ଧରମା, ମଣିଆ, ଛଡ ଇଅ ଦାରତରେ ଘଡ଼ି କଣ ଖାଇକେ ପିଇଲେ କେଜାଣି ।"

"ଯାହା ତାଙ୍କ କର୍ମରେ ଥିବ । କର୍ମଳକ୍ଷଣ ବେଦ ସଦେ ଅଭଣ୍ୟେ ଅଭଗର ପ୍ରାପ୍ତେ ।"

"ନାହିଁ ରେ ଯଦୁ । ସ୍ୱେର ନ କର ତାଜତରେ ପଶିବା ଜେତେଜେତେ ହେଲେ ତାହାଙ୍କ କର୍ମରେ ନାହିଁ । ସବୁ ଜାଣୁ ଜାଣୁ କମିତ ଭଲ ଭୁମ ହେଇ ରହିବା, କହଲୁ ?"

"ଏଥିକ ଆମର ଆଉ ବଳ କଣ, ଭାଇ । ଏ କଥା-ତ କାଲୁ ଆମ ହାତ ପାଇଣାରେ ନାହିଁ । ହର ମିଶ୍ରଙ୍କୁ ଯାଇଁ କହିଲା ଯେ, ସେ ମୁହଁ ବୁଲାଇଦେଲେ । କହିଲେ, "ମତେ ଆଉ ଏତେତେତେ ପଚାରିଲେ ହବ କଣ ? ମୋ ହାତର କଥା କଣ ହେଉଛି ? କେଉଁ ପାଣି ଯାଇଁ କେଉଁଠି ଜଠିଲାଣି ଦେଖୁ ନ ।" ସତ କଥା, ସେ ଅବା ଏତେତେତେ ଆଉ କରିବେ କଣ । ସରକାର ଦୁଆରେ ଯାହା ସିନା ହବ, ତୁମ ଆମ ହାତର କଥା ତ ନୁହଁ ।" ଯଦୁ ଦଳେଇ ଗୋଟାଏ ଲମ୍ବା ନିଶ୍ୱାସ ଛାଡ଼ି ଚୁପ ହେଲା ।

ନଈ ପାରି ହେଇ ବଉଳ ଆଉଖାଖ ବନ୍ଧ ଉପରକୁ ଉଠିଲା । ଯଦୁ ଏପାଖରେ ଛୁଡ଼ା ହେଇ ତାକୁ ଚାହିଁଥାଏ । ସେଇପଟୁ ବରଷା ମାଡ଼ି ଆସୁଚ । ସାବୁଜା ଗଛର ପତଳ ଭିତରେ ସେପାର ଗାଁଗୁଡ଼ିକ ବର୍ଷାଧାରାରେ ଘୋଡ଼େଇ ହେଇ ଧଳା ଦିଶୁଚ । ଝର ଯାକଯମକରେ ବୋହଣୀ ଭଳି ବର୍ଷା ଝୁଲ ଆସୁଥିବାର ଶବଦ ଶୁଭିଲଣି । ବଉଳ ଖୋଲା ଉଦହରେ ଏକମୁହାଁ ଝୁଲିଥାଏ । ପାଖରେ ଥିବାବେଳେ ଯଦୁ ମନରେ ତା'କଥା ଏମିତ ପଡ଼ୁ ନ ଥିଲା । ଆଜ ତାକୁ ଘଡ଼ପଡ଼ୁ

ଦୂରରୁ ଦୂରକୁ ବୁଲି ଯାଉଥିବାର ସ୍ମୃତି ଯଦୁ ବଖାଣୁଥିଲା, କେତେ ବୋମୁହାଁ ଲୋକଙ୍କୁ ସେ ଦେଖିଛି ଯାହାଙ୍କର ପେଟରେ କଥାଏ ହେଲେ ମୁହଁରେ କଥାଏ, କାମରେ କଥାଏ । ତେବେ ବରଜୁ— ବରଜୁ ଲୋକଟା ଯେମିତି ସବୁ ଦିନେ ଏକମୁହାଁ ।

ଉପରେ ଆକାଶ, ତଳେ ଗାଁଗଣ୍ଡା ଧାନକିଆରି । ମଝିରେ ମେଘ ଯେମିତି ଏ' ଦୁହିଁଙ୍କି ଏକାଠି କରି ଦେଇଛି । ତାହାର ଭିତରେ ବରଜୁର କଳା ଦେହଟା କାହିଁ ମିଶିଗଲା । ଯଦୁ ବାରିକର ମନଟା ଘାଣ୍ଟି ହେଲା ବରଜୁ ହାତରେ ଛତାଖଣ୍ଡେ ହେଲେ ଦେଇ ପାରିବ କାହିଁ ।

ତାକୁରୁ ତଳଖାଯାଏ ପାଣିରେ ଜୁଡୁବୁଡୁ ହୋଇ ବରଜୁ ଘରେ ପଶିଲା । ହାରବୋଉ କହିଲା, "କେଉଁଠି ଟିକିଏ ଛତା ହୋଇ ପାରିଲ ନାହିଁ ଯେ, ଓଦା ସରସର ହୋଇ ଧାଇଁଚ ?"

"ସବୁଆଡ଼େ ତ ମେଘବର୍ଷା, ଛତା ହେବ କେଉଁଠି ?" ହାରବୋଉ ହାତରୁ ଶୁଖିଲା ଗାମୁଛା ନେଇ ବରଜୁ ପୋଛୁପାଛୁ ହେଲା ।

ହାରବୋଉ ମୁହଁ ଶୁଖାଇ କହିଲା, "ଗଜବ ତ ଯାଉଛନ୍ତି, ହାସ ଘରକୁ । କଣ ହେଇ ଗଲାଣି ।"

"ହବ କଣ ଭଲ ହେଇଯିବ ସେ । ଆଣିଲ କଣ ରଖିଚ । ବେଳକରେ ହଂସା ଉଡ଼ିଲଣି ।" ହାରବୋଉ କଂସାଟାରେ ସକାଳର ସୁଦଣା ମଣ୍ଡା ଆଣି ଥୋଇଲା । ପଚାରିଲା, "ଘରକୁ ଆମର ଯାଇଥିଲଟି । ଛକଡ଼ି କଣ କହୁଥିଲେ ?"

ମଣ୍ଡାଟାଏ ପାଟିରେ ପୂରାଇ ବରଜୁ କହିଲା, "ଚକର ଭଲରେ ଅଛୁ ।"

ସବୁଲ ଖାଇସାରି ହାତ ଧୋଇ ସେ ବାହାରିଗଲା । ସେତେବେଳକୁ ହାସବୋଉ ଚଜସମୂଳେ ସଞ୍ଜବତି ନେଇ ଗୁଣୁ ଗୁଣୁ କରି ଗଜନସ୍ତାରଣ ବୋଲୁଥାଏ । ମୋଟ ଗୋଟିଏ ଲେଖାଁ କଳଚା ଲଗାଇ ଦାଣ୍ଡଦୁଆର, ବାଡ଼ିଦୁଆର, ଆଉ ଘରଦୁଆର-ମାନଙ୍କ ମୁହଁରେ ରଖିଦେଇ ଆସିଲା ।

ଚଇତ ମୂଳରୁ ମୁଣ୍ଡ ଟେକି ହାସବୋଲ ପିଣ୍ଡାକୁ ଆଖି ପକେଇ ଦେଖିଲା, ଖାଲି ଜଂଘଟା ପଡ଼ିଚି, ବରଜୁ ନାହିଁ । ମୋତି କହିଲା, "ବାଗା ହାଟଆଡ଼କୁ ଯାଇଛି ।" ମନଟା ତାର ଜଙ୍ଗଲ ନିଆଁ ଭଳି ଗଗରେ ଜଳି ଉଠିଲା । ମଲା ! ଗାଁ ଭିତରେ ଆଉ କଏ ମଣିଷ ଅଛି, ନା ଏଇ ଏକା ! ଘରେ ଗୋଡ଼ ଦେଲା କି ନାହିଁ ପୁଣି ଜଣ ଏମିତି କାମ !

ନୂପୁର ବାଉକାଣୀ ଆଉ ଦିନେ ତାକୁ କହୁଥିଲା, "ତମେ କଣ ଶୁଣି ନ କି ଅପା ? ଏବେ ସବୁ କେଉଁଠି ଗାନ୍ଧି ମହାତମା ରଜେ ହେଲେଣି ଯେ, ସେ ହୁକୁମ କରିଚନ୍ତି, ଅରଟ ଧରି ସୂତା କାଟ । ଯେତିକି କାଟିବ ସେତିକି ପିନ୍ଧିବ । ନଇଲେ ନାହିଁ । ଯେତିକି ଛସ୍ତିକ ସେତିକି ପିଠା । କି ମରଦ, କି ମାଇପେ ସମସ୍ତେ ସୂତା କାଟିବେ । ମୁଁ ତା'ହେଲେ ତ ଗୋଡ଼ ଉପରେ ଗୋଡ଼ ପକେଇ ଅରଟ ବୁଲନ୍ତୁ ।"

କେଳି ବାଉରୁଣୀ କଂସାଟା ଧରି ଘିଅ ମାଗି ଆସିଥିଲା । ଟାପରା କରି କହିଲା, "ଆଉ ତମ ମୁଣ୍ଡଆବୋରା ସକାଳୁ ଉଠି ତମ ପାଇଁ ନୋଟା ହାନ୍ତକାଠି ସଜ କରନ୍ତେ ।" ମାଳି ମାଉସୀ କେସର କାଟୁଥିଲା । ମୁହଁ ଛୁଆଡ଼ି କହିଲା, "ଆଲୋ ରଖିଆ ତୋ ଗାନ୍ଧି ମହାତମା । କଥାରେ ସବୁ ଅଛି, ଦେଖ ମାଣ୍ଡିଲେ ଖଣ୍ଡିଆ ମାଡେ । ଖାଲି ଗାନ୍ଧି ମାହାତମା କଥାରେ ସମସ୍ତେ ଯେବେ ମାଣ୍ଡିବେ, ତେବେ କାହିଁକି କଣ୍ଠା କମାର ଶାଳ କରିବ, ନାଥ ମହାରଣା ଲଙ୍ଗଳ ଗଢ଼ିବ, ବନା କୁମ୍ଭାର ହାଣ୍ଡି ପୋଡ଼ିବ ? ତମେ ଆମେ ଯେବେ ଅରଟ ଧରି ସୂତା କାଟିବା ତା'ହେଲେ ଜାଳ କରିବ କିଏ, ଧାନ କୁଟିବ କିଏ, କିଏ ବା ଆଖି ନାକ ଏକାଠି କରି ଚୁଲି ଫୁଙ୍କିବ ।" ମାଳିର ତା ନିଜ ଘରକଥା ମନେ ପଡ଼ିଗଲା । ଖାଗଲା ପୁଅକୁ ବାଜିବ ଘଇତା କହୁଁ ଗାନ୍ଧି ମହାତମା ସମ୍ଭାଳିବ ଭଲା !

ନୂପୁର କାଖରୁ ବାଉଁଶିଆଟାକୁ ତଳେ ଥୋଇଦେଇ କହିଲା, "ସତେ ଲୋ ମାଉସି, ଆମର ତ ବାର ଦୁଆର ଦୁଃଖ ନ କଲେ ପେଟ ପୂରିବ ନ । ତମର ଘର ପାଇଁ କଲେ ସିନା ତେମେ ସେଥିରେ ପାଏ ଦବ । ଅରଟ ଧରି ସୂତା କାଟିଲେ କଏ କାଇଁକି ଦବ ? ହେଲେତ, ବୁଢ଼ୀ ଭୂଆସୁଣୀ ହେଲେ କି ବଡ଼ଲୋକଆ ଘର ହେଲେ ତାଙ୍କର ଅବା ଡର ଅଛି, ସେ ଅରଟ ଧରି ସୂତା କାଟିଲେ କି ପୋଥି ଧରି ଗୀତ ବୋଇଲେ । ଯେମିତି ଆମର ମଥୁରା ସାହୁଙ୍କ ଝିଅ ଜମା ଦେଖ, ସକାଳୁ ସଞ୍ଜଯାକେ ଅରଟ କି ପୋଥି ଧରି ବସିଥିଲେ କେହି କହିବା ବୋଲିବାକୁ ନାହିଁ । ଆମର ତ ସେତ ପାଇଲେ, 'କୁମ୍ଭାର ଘରର ବହୂ—ନା ଝାଟିକି ନ ଗଲେ ମାଟିକି ଯାଉ' ।"

ବେସରବଣ୍ଠାରେ ମାଳର ଅଷ୍ଟାଙ୍ଗ ଦୋହଲି ଯାଉଥାଏ । ନୂପୁରକୁ ନ ଶୁଣି ସେ କହି ଲାଗିଥାଏ, "ହୁଁ, ଏ କଥା କହିଲୁ ଯେ ମନକୁ ପାଇଲା । ଜମାର ଗେରସ୍ତ ଗଲାକାଳରୁ ମୁହଁରୁ ତ ଚାଉ ହସ ପୋଛି ହୋଇ ଯାଇଥିଲା । ଆଲୋ, ତନ ପୋଡ଼ିଗଲେ ସିନା ସମସ୍ତେ ଜାଣିବେ, ମନ ପୋଡ଼ିଗଲେ ଜାଣିବ କଏ କହିଲୁ ? ଚିନ୍ତାରେ ସେ ଝିଅଟା ତ ଏକାବେଳେ ଶିଶୁ ଦଉଡ଼ି ହୋଇ ପଡ଼ିଥିଲା । ଏବେ ଟିକିଏ ଯାହାହେଉ, ଭୁଲିଁ ସହିଲାଣି ।"

"ତମେ ଶୁଣିନ କି ମାଉ ସା'ନ୍ତାଣୀ, ଯେତେ ଲୋକ ସୂତା କାଟୁଚନ୍ତି ସଭିଙ୍କି କୁଆଡ଼େ ସରକାର ଧରି ନେଇ ପରା ଠାକୁରାଣୀ ଆଗରେ ବୋଦା ଦବ ।" କେଜାନି ବାଉରାଣୀ ମୁହଁରୁ ଏ କଥା ଶୁଣି ହାସବୋଉର ଗୁଣ୍ଡରେ କଏ ଯେପରି ହାତୁଡ଼ିଖଣ୍ଡେ ଧରି ପିଟିଲା । ତା'ରି ଗେରସ୍ତ ପୁଣି ସୂତାକଣ୍ଠାରେ ମାତିଛି ! ଏତେ ଲୋକ ତ ମାତିଛନ୍ତି, ବରଜୁ ନ ଗଲେ କଣ କାମ ଅଟକି ଯିବ ?

କେଳ କଥାରେ ନୂପୁର ହସି ହସି ଗଡ଼ଗଲା । "ମଲଲେ ଝଲଗା ସବାଖାଣ୍ଟ । ଏଡ଼କ କାଳଭୁଣ୍ଡୀ ତୁ । ଠାକୁରାଣୀ ଆଗରେ ବୋଦା ବଳ ବୋଲି କଏ କହିଲା ତତେ ? ସରକାର ତ ଆଗ ଧରିନେଇ ଗାରଦ ଭିତରେ ପୂରାଇବ । ତହିଁରୁ କଣ ହେବ କଏ ଜାଣେ ?"

କେଳ ଆତୁର ସ୍ୱର ଫେଲେଇ କହିଲା, "ନାଇଁବା, ତମ ଆଣ ପକାଉଚ । ଡମିଣ୍ଡପଦାରୁ ସବୁ ପାଞ୍ଚୁଟା ମଣିଷ ଏମିତି ବୋଦା ପାଇଲେଣି । ମୋ ନେଡ଼ର ମଉସା ସାଙ୍ଗତର ବୋଝେ ଗିନ ଯାଇଥିଲେ ଯେ, ଶୁଣି ଆଇଚ ।"

ନୂପୁର ହସି ହସି ଆଉ ପ୍ରଶ୍ନେ ତାକୁ ଶୋଧିଲା, "ହଁ ଲୋ ମୁହଁରେ ନଆଁ ଲେ ନଅଁଶୀ ।" ଦାଗବୋଉ ମନଟା ଘାଣ୍ଟିହେଲା । କାହିଁକି ଭଲ ବରଜ ଏ ବୁଦ୍ଧି ଧରିଚ ?

ମାଳ ଚରକାଣ୍ଡରେ ବେସର ଦେଇ ଆଉ ହାଣ୍ଡିଶାଳରୁ ବାହାରି ଆସି କହିଲା, "ଆଲୋ, ଆମର ଏତେ ବସ୍ତୁର ପଡ଼ିଚ କାହିଁକି ? ସାନ ତୁଣ୍ଡରେ ବଡ଼ କଥା । ବଡ଼ବଡ଼ିଆ ଯାହା କରିବେ, ସେଇଟା ହେବ । ଆମେ ଯେତେ ଭୁକିହେଲେ ଶୁଣୁଚି କଏ ? ଜମା ପଶ୍ନ କହୁଥିଲା, କେତେ ବଡ଼ଘର ଝିଅ ବି କୁଆଡ଼େ ଗିରଫ ହୋଇ ଗଲେଣି ।" "ସତେ କିଲୋ ମାଉସୀ ?"—ନୂପୁର ପଚାରିଲା । ଛି, ଛି, ମାଇକିନା ଝିଅ ଯେତେହେଲେ ତ କିଛି ଅଣ୍ଡିରି ପୁଅ ନୁହଁ । ଆଚ୍ଛା, ଗିରଫ କଲେ ତ ସିପେଇ ତାଙ୍କୁ ଟଣା ଓଟରା କରୁଥିବ । ଆଉ ଭଲ ବାଞ୍ଛା ରହିଲା କଣ ? ତାଙ୍କ ଘେରଉସ୍ତମାନେ ଏଥିରେ କଣ କହୁଥିବେ ।"—"ମଲା, ଘେରଉସ୍ତମାନେ ତ ଉଲଟି ମାଇପମାନଙ୍କୁ ଦାଣ୍ଡରେ ଛାଡ଼ି ଦେଇ ଆସୁଛନ୍ତି ।" ମାଳ କହିଲା ।

କେଳନ କାବା ହୋଇଗଲା—"ଆଜ ହବ ନ, କାର ପାଇଁ ନଟାରେ ପଶିଲା ପିନା । ଆମ ବାଇଷବଘରେ ତ ଏ କଥା ହବ ନ ।"

ନୂପୁର ତାର ବସଣୀଟାକୁ ଦୋହଲାଇ ତା ତଳକୁ ଗ୍ରାନଷିଆ ଦାନ୍ତଗୁଡ଼ାକ ଦେଖାଇ ହାସବୋଇକୁ ସ୍ବର୍ଣ୍ଣି କହିଲା, "ଆଜଣ ତମେ ଶୁଣିନ କ ? ପର ପରମେଶ୍ବର, କାହା ଝିଅବୋହୂ କଣ କଲେ ଆମେ କାହିଁକ ସେ କଥା ଭଲ୍ଲରବା । ହେଲେ ଜମାଦେଇଙ୍କ ନାଁରେ ସାବ କେଉଁଟଣୀ ପଉଁ କଥା କହୁଥିଲା, ମୁଁ ଆଜିର ସ୍ବଣ ଘାଁ ଜଣଙ୍କ ମୁହଁରୁ ସେ କଥା ଶୁଣିଲଣି । ସ୍ବାବଠଉଁତ ଶୁଣି ଚକେଇ ଜଭ କାମୁଡ଼ି ଦେଲ । ଜମାଦେଇ କଣ ଖାଲ ସୂତା କାଟୁଛନ୍ତି ? ସେତେବେଳେ କୁଆଡ଼େ ଜପ୍ନିବାବୁଙ୍କ ସାଙ୍ଗରେ ସେ ଯେମିତି କଥାଭଷା ହଉଥିଲେ, ସେଥିରେ ଦେଖିଲା ନୋକକୁ ନାଜ ମାଡ଼ୁଚ ।"

"ମୁଁ ପଗ ହାସବାପାକୁ ଏଇକଥା ଛୁଗୁଲେଇଲାରୁ ସେ ମୋ ଆଡ଼କୁ ଯେମିତ ଭଟମଟ କର ସ୍ବର୍ଣ୍ଣିଲା, ମନ ହେଲା ଘରୁ ଦଉଡ଼ି କଣ୍ଢପଳେଇଆନ୍ତି । ତେବେ କଣ କ' ମଣିଷୁଟା ତ ସେମିତି କାଣ୍ଡୁ ଖସ୍ବପ ନୁହଁ, ଦଣ୍ଡେ ପାଣି ହୋଇଯାଇ କହିଲା, 'ତମେ ସବୁ ଅସଲ କଥା ବୁଝି ପାରୁ ନ । ଝିଅ ବୋହୂମାନେ ନ ବାହାରନ୍ତି କାହା ଘରୁ, ଯେଉଁମାନେ ଟିକଏ ଥିଲାବାଲା, ତଳନ୍ତି ପକ୍ଷ, ନୋକବାକ ଦଇଟା ଗୋଟେ ରଖିଚନ୍ତି, ତାଙ୍କରି ଘରୁ । ଯାହାଙ୍କର ଉଦାକୁ ନ ବାହାରିଲେ ପେଟ ପୋଡ଼ିଯିବ, ତାଙ୍କୁ ଭଲା ଆଜଯାକେ ଘର ଭିତରେ କଏ ଲୁଛିଇ ପାରିଛି ? ବସ୍ତି, କଟା, ଖତବୁହା ସବୁଥିରେ ତ ସେ ବାହାରୁଚନ୍ତି, ତେବେ, ଏଇନାଗେ ଯେ ତଳପକ୍ଷ ଭଲ-ଲୋକଘର ଝିଅ ବୋହୂମାନେ ବାହାରିଲେ, ସେଥିରେ ସେମାନେ

କିଛି ଦୋଷ ଦେଖୁ ନାହାନ୍ତି ବୋଲି ତ ? ସେମାନେ କଅଣ ପାଠଶାଠ, ଧର୍ମକର୍ମ ଜାଣନ୍ତି ନାହିଁ ନା ବୁଝନ୍ତି ନାହିଁ, ଆମେ ତାଙ୍କୁ ନିନ୍ଦିବା କାହିଁକି ?”

ମାଳି କହିଲା, “ସେ କଥା କଣ ମିଛ କି ? ଉମା କଥା କହୁଚୁ ଯେ, ପିଲା ଝିଅଟା ଯୁବା ବୟସରେ ତା କର୍ମ ଯେମିତି ହେଲା, ସୁଖ କଣ ଜୀବନରେ ଜାଣିଲା ନାହିଁ । ବଡ଼ଲୋକଘର ଝିଅ ତ, ତାର ଅବା କଣ କାମଦାମ ଅଛି ଯେ ସେ କାହିଁକି ସୂତା କାଟିବ ନି ?”

ହାଣ୍ଡିବୋଉ ସେଦିନ ଆଉ ଥରେ ବରଜୁକୁ କହିଲା, “ବାର ଲୋକେ ବାର କଥା କହୁଛନ୍ତି, ଆମର ସେ ସୂତାକଟା ନ ହେଲେ କଣ ଭାସି ଯାଉଛି ? ଯେତେ ଯାହା କହ, ମୋ ମନଟା କାହିଁକି ଭଲ ଲାଗୁନି ?”

ବରଜୁ କହିଲା, “ତମକୁ ଯେତେ ବୁଝେଇଲେ ବୁଝିବନି । ଆମେ ଯେମିତି ଧାନ କୁଟି ଭାତ ଖାଇବା, ସେମିତି ସୂତା କାଟି ଲୁଗା ପିନ୍ଧିବା—ସେଥିରେ ଦୋଷ କଣ ?”

“ଦୋଷ ନାହିଁ ତ ଏତେ ଧଉଡ଼ପଉଡ଼ ଲାଗିଚି କାହିଁକି ? ଯା ଭିତରେ ଆଉରି କିଛି ମରମ ଥିବ ବୋଲି ସିନା !”

ବରଜୁ ମରମ ଖୋଜିବାକୁ ଗଲା ନାହିଁ । ଏଭଳି [illegible] କଥାରେ ଯେବେ ଧଉଡ଼ପଉଡ଼ ମାଡ଼ିଫଳଉ ହୁଏ, ତା ହେଲେ ତ ମଣିଷ ଯାହା କରିବ ସବୁ ଦୋଷ । ହାକିମ ହେଲେ, କି ପୁଲିସ ହେଲେ ସେମାନେ ତ ପୁଣି ମଣିଷ । କିଛି ବାଘ ଭାଲୁ ନୁହନ୍ତି ।

ମୁନସିବାବୁଙ୍କ ପାଖକୁ ବରଜୁ ସିଧା ଯାଇ କହିଲା, “ପ୍ରଧାନ-ପଡ଼ାରେ ଯାହାଙ୍କୁ ଶ୍ଳେଷ ସନ୍ଦେହରେ ଗିରଫ କରାଯାଇଛି,

ସେମାନେ ପୁତ୍ରପୁତ୍ର ନିର୍ଦ୍ଦୋଷ । ସେମାନେ ଯେବେ ଦୋଷୀ ହୁଅନ୍ତି, ବରଜୁ ତେବେ ନିଜେ ବି ଦୋଷୀ ।"

ମୁନସିବାବୁ ତାହାର କଥା ଶୁଣି ହସୁଥିଲେ ସେ ଗୋଟାଏ ହାକୁପଣିଆ ପାଗଳ । ଥାନା ହତାରୁ ତାକୁ ବାହାର କରି ଦେବା କଠିନ ହେଲା ନାହିଁ ! ବରଜୁକୁ ଯେତେବେଳେ ଥାନା ସିପାହୀ ବାହାରିଯିବାକୁ କହିଲା, ସେ ମାନ ଅପମାନ ପାସୋରିଦେଇ ଖୁବ୍ ନରମ ସ୍ୱରରେ ମିନତି କଲା ଯେ, "ସେ ଆଉ କିଛି ଚାହେଁ ନାହିଁ । ଖାଲି ଟିକିଏ ହାଜତରେ ପଡ଼ିଥିବା ଉଦ ସୁତାର, ରଥ ମଳିକ, ମଣି ସ୍ୱାଇଁ ଆଉ ଧରମା ଖେଇଙ୍କୁ ଦେଖିଦେଇ ଯିବ ।" ତାହା କି ଯେତେବେଳେ ନାମଞ୍ଜୁର ହେଲା, ତାହାର ପାଦ ଦୁଇଟା ଯେପରି ଠେଲି ଠେଲି ତାକୁ ଫାଟକ ବାହାରକୁ ଆଣୁଥାଏ, ଆଉ ଯେଉଁଠି ସେ ପାଦ ପଡ଼ୁଥାଏ ସେଠୁ ଯେମିତି କି ପୃଥିବୀର କାହିଁ ତଳରୁ ଗୋଟାଏ ଭୂମିକମ୍ପ ବାହାରିବ । ଯେଉଁଠି ପାଦ ପଡ଼ୁଥାଏ, ସେଠୁ ଯେମିତି କାହାର ଡାକ ଶୁଣାଯାଏ, ତୁମେ କିଅଣ ସତେ ଆମକୁ ଛାଡ଼ି ବାହାରିଗଲ ? ବରଜୁ ଓଲଟିପଡ଼ି ଥାନା ହାଜତ ଆଡ଼କୁ ଚାହିଁଲା । ଅନ୍ଧାର ରାତିରେ ଷ୍ଟେସନ ସିଗନାଲବତି ଭଳି ତା'ହାର ଆଖି ଯୋଡ଼ାକରୁ ଲାଲ ନିଆଁ ବାହାରି ଆସିଲା— "କେବେହେଁ ନୁହେଁ, କେବେହେଁ ନୁହେଁ, ତୁମକୁ ଛାଡ଼ିଲେ ବରଜୁ ତେବେ ରହିବ କେଉଁଠି ? ନା, ନା, ବରଜୁ ! ଆଉ ଥରେ ତତେ ଛୁଡ଼ା ଦେବାକୁ ପଡ଼ିବ । ମିଛ ଷଡ଼ଯନ୍ତ୍ରରେ ଅନ୍ୟାୟର ପ୍ରତିବାଦ କରି । ଆଉ କିଏ କରୁ ନ କରୁ ବରଜୁ ତ ଏତେବଡ଼ ମିଛ, ଏତେବଡ଼ ଅନ୍ୟାୟ ବରଦାସ୍ତ କରି ପାରିବ ନାହିଁ ।"

ହାସ୍ୟରୋଳ୍ କେତେ ଆକଟ କଲା, ବାବୁମାନେ ବହୁତ ଟେମଚ ଦେଇ ବୁଝେଇଲେ । ପଧାନପଣ୍ଡାର ଉଦ ସୁଚାର, ରଥ ମଳକ, ମଣି ସ୍ୱାଇଁ ଓ ଧରମା ଶ୍ୱେଇଙ୍କୁ କନ୍ଦେ ।ଷରେ ସେ ଖଲାସ କରି ଆଣିଲା । ତେବେ ହେଲେ ବରଜୁର ମନ ବୁଝିଲା ନାହିଁ ।

ସେଥିର ନୋଟିସ୍ ବଣ୍ଟା ହୋଇଥାଏ, ସ୍ୱାଧୀନତା ଦିବସ ପାଳନ ପାଇଁ ହାଟ ପଡ଼ିଆରେ ସଭା ହେବ । ସେତେବେଳେ କଂଗ୍ରେସର ନାଁ ଯେ ଧରନ୍ତି ତାହାର ନାଁ ପୁଲିସ ଟିପି ରଖିବାର ଶୁଣାଯାଇଥାଏ । ଯେମିତି କି କଂଗ୍ରେସବାଲାଙ୍କ ନାଁ ଟିପିବା ଛଡ଼ା ତାଙ୍କର ଆଉ କିଛି କାମ ନାହିଁ । ହରିପୁର ହାଟ ପଡ଼ିଆରେ ମଧ୍ୟ ସବ୍ଡିଭିଜନ ମୁନସି, ଦଫାଦାର ଦାରୋଗାମାନେ କାଗଜ ପେନ୍ସିଲ ଧରି ଜଣ ଜଣଙ୍କୁ ଟିପିବାରେ ଲାଗିଥାନ୍ତି । ଜୟକୃଷ୍ଣ, ଅର୍ଜୁନ ଓ ନାଥବାବୁ ସଭାରେ ଛିଡ଼ା ହୋଇ କେତେ କେତେ କଥା କହିଲେ । 'ଇଂରେଜୀ ସରକାର ଦେଢ଼ଶ ବର୍ଷ ଧରି ଏ ଦେଶକୁ ଚପୁଡ଼ି ଗରିବ କରି ପକାଇଛି । ତନ୍ତୀମାନଙ୍କ କାରବାର ଲୁଗାବୁଣା ବେଉସା କମିତି ବନ୍ଦ କରି ଦେଇ ନିଜ ଲୁଗା ଚଳେଇଛି, ସେଥିପାଇଁ ଆମକୁ ଆଜ ଖାଇବାକୁ ଗଣ୍ଡେ, କି ପିନ୍ଧିବାକୁ ଖଣ୍ଡେ ମିଳୁ ନାହିଁ । ଆମେ କୁଟି ଖାଇବୁଁ, କାଟି ପିନ୍ଧିବୁଁ । ସେଥିରେ ଆମକୁ କିଏ ରୋକିବ କିଏ ?' ଏମିତି କେତେ କଥା, ତା' ସାଙ୍ଗରେ ଇଂରେଜୀ ସରକାର ଉପରେ କେତେ ଗାଳି ବରଷିଗଲା । ଦୁଇ ଶହ ସବୁ ଲୋକ ଭିଡ଼ ହୋଇ, କାବା ହୋଇ ସବୁ କଥା ଶୁଣୁଥାନ୍ତି ।

ବାବୁମାନେ କହିସାରି ବରଜକୁ ଝିଙ୍କିଲେ କିଛି କହିବା ପାଇଁ । ସେ ଏଡ଼େବଡ଼ ସଭାରେ କେବେହେଲେ କହି ନାହିଁ । ତାକୁ ଭାରି ଲାଜ ଲାଜ ମାଡ଼ୁଥାଏ । ଶେଷରେ ତାକୁ ଯେତେବେଳେ ନାଥ ବାବୁ ଠେଲି ଛିଡ଼ା କରାଇଦେଲେ, ଦୁଇଶ ମଣିଷଙ୍କୁ ଆଗରେ ଦେଖି ନିଜକୁ ସେ ହାରୋର ପକାଇଲା । ମହାତ୍ମା ଗାନ୍ଧି ଯେତେ-ବେଳେ କଟକ ଆସିଥିଲେ କାଠଯୋଡ଼ୀ ନଈବାଲିରେ ଯେତେ ଲୋକ ଜୁଟି ହୋଇଥିଲେ, ସେତେବେଳେ କେହି କେହି କହୁଥିଲେ ଖାଲି

ମାରଦେଲେ ସ୍କୁଲଫିକ, ବଇଜୁ ସେତେବଡ଼ ସପ୍ନ ଦେଖିଛି । ହେଲେ ଛୁଡ଼ା ହୋଇ ଜନ୍ମ ନାହିଁ । ଆଜ ତାକୁ ସବୁ ଅଡ଼ୁଆ ଲାଗୁଥିଲେ ବ ଆଉ କଛି ଉପାୟ ନ ଦେଖି ସେ କହିଲ—

"ଏଠାରେ ଆମେ ଯେ ଦୁଇଣ ଲୋକ ସବୁ ଶୁଣି ଚୁପ ହୋଇ ବସିଚେଁ ଏହାର ଅସଲ କାରଣ ଜାଣ ଭଲ ? ତାହା ଆଉ କଛି ନୁହ । ମନ ଭିତରେ ଖାଲି ଗୋଟାଏ ଡର । ଗାଁରେ ଜମିଦାର ମକଦ୍ଦମାକୁ ଡର, ନଇଲେ ତାଙ୍କ ପିଆଦାକୁ, ଗାଁ ବାହାରେ ଦଫାଦାର କନଷ୍ଟବଲଙ୍କୁ ଡର । ପୁଣି ସହରକୁ ଗଲେ ମଟର ଡ୍ରାଇଭର, ଦୋକାନୀ, ଗାଡ଼ିବାଲା, କାହାକୁ ଭଲ ଆମେ ନ ଡରୁଁ ? ଗୁଡ଼ ଖଣ୍ଡେ ଦେଖିଲେ କୁତା ଯେମିତ ଡରେ ଆମେ ସେମିତ ଜଣେ କୁରୁତାପିନ୍ଧା ପଗଡ଼ିବନ୍ଧା ଲୋକକୁ ଦେଖିଲେ ଡରୁଥାଉଁ । ବାବୁମାନେ ଆଜ ଯାହା କହଗଲେ ସେଥିରୁ ମୁଁ ଏତକ ବୁଝିଛି ଯେ ଆମକୁ ଏହି ଡରଟାକୁ ମନ ଭିତରୁ ତଡ଼ିବାକୁ ହବ । କଂଗ୍ରେସ ଆମକୁ ଏହି ଡରଟାକୁ ଦୂରରେ ଫିଙ୍ଗିଦେଇ ନିଜ ରୂପରେ ଛିଡ଼ା ହବାକୁ ଡାକୁଛି । ଏହି ଡରଟା ଖାଲି ମିଛ ଯୋଗିଣୀ ଭଳ ଆମକୁ ଘୋଡ଼େଇଛି ସିନା ! ସତ୍ୟାଗ୍ରହ ଆନ୍ଦୋଳନ ଏଇ ମିଛ ଯୋଗିଣୀକୁ ଆଡ଼େଇଦେଇ ମଣିଷ ଭିତରେ ଯାହା କଛି ସତ, ଯାହା କଛି ନ୍ୟାୟ, ଯାହା କଛି ଉଚିତ ତାହାକୁଇ ଆଶାବାଡ଼ି କରି ଧରିବାକୁ ଡାକରା ହୋଇଛି । ତୁମେ ଭାବୁଥିବ ବଡ଼ଲୋକଙ୍କର ସିନା ଧନ ସମ୍ପତ୍ତି ଥିବାରୁ ସେମାନେ ତାହା ପର ଉପକାର ପାଇଁ ଧରମ କାର୍ଯ୍ୟରେ ଦାନ କଲେ । ଆମର ଅଛି କଣ ଯେ ଦେଇ ପାରିବୁଁ ? ହେଲେ ଏ ସତ୍ୟାଗ୍ରହ ଯୁଗରେ ଧନ ଲଉଡ଼ି ଗୁଳିବାରୁଦ ଲୋଡ଼ା ନାହିଁ, ଖାଲି ଭଲ ମଣିଷର । ନକୁଛରେ ତ ଏଇ ହତିଆରଟା ସବୁର

ହାତରେ ଅଛୁ । ଏହା ଗୃହ ବାବୁଦଠାରୁ କମ କାଟିବ ନାହିଁ । କଣ ତେବେ, ଏ ହରିଅାର ଧରିବାକୁ ଆମେ କଣ ପଛେଇବା ?”

ବଇଜୁ ପ୍ରଧାନ ପତ୍ନଲେ କଂଗ୍ରେସ ତାଲିକାରେ ନିଜ ନାଁଟି ଲେଖାଇ ଦେଲା । ଜଣ ଜଣ ହୋଇ ସ୍ୱର ପାଞ୍ଚ ଜଣ ତା’ ପଛକୁ ବାହାରି ପଡ଼ିଲେ । ଏଥିରୁ ସଭ୍ୟ ପାଇଁ ଲୋକଙ୍କ ଭିତରେ ଯେଉଁ ଆଗ୍ରହ ଦେଖାଗଲା, ତାହା ଯେତେ କମ୍ ହେଉ ପଛେ ସରକାର ସେଥିରେ ଗୋଟାଏ ବିପଦ ଗଣିଥିଲେ । ସେଥିଲାଗି ଯାହା ପ୍ରତିକାର ହେବାର କଥା ତାହା ହୋଇଥିଲା । ବଇଜୁ ପ୍ରଧାନ ବକ୍ତୃତାରେ ଆଜ ଯାହା କହୁନା କାହିଁକ ଗାଞ୍ଜୋଟି ଥର ଗାନ୍ଧିଙ୍କ ନାଁ ଭୁଣ୍ଡରେ ଧରିଛୁ । ତାହା ପରେ ଲୋକଙ୍କୁ ମତାଇଛୁ କପାସୂଷ ଭଣିବାକୁ , ଆଉ ସୂତା କାଟି ଖଦଡ଼ ଲୁଗା ପିନ୍ଧିବାକୁ । ଶେଷରେ ପୁଣି ସତ କଥା କହିବାକୁ । ସ୍ୱଜାତ୍ରୋହୀ ଆଉ କାହାକୁ କହନ୍ତି କି ?

ବଇଜୁ ପ୍ରଧାନ ଠେଲା ପେଲାରେ ଛିଡ଼ା ହୋଇପଡ଼ି ପତ୍ନଲା ଥିବ ଦୁଇ ଶହ ଲୋକଙ୍କ ଆଗରେ ମୁହଁ ଫିଟେଇ ଯେ କଣ କହିଲା, ସେ ନିଜେ ହେଜ ପାରିଲା ନାହିଁ । ତେବେ ଅଣନିଶ୍ୱାସୀ ହୋଇ କହି ସାରି ହଠାତ୍ ବସି ପଡ଼ିଲା ବେଳେ ତାଳି ଶବଦ ଉଚ୍ଚୁଳି ଉଠିଲା; ସ୍ୱସ୍ତ ବାହାବା କଲେ । ଜଗ୍ଗିବାବୁ ତ ଏକାବେଳେ ତାକୁ କୁଣ୍ଢେଇ ପକାଇଲେ । ତାଙ୍କ ଭଳି କୁହାଳିଆ ଲୋକ ଯେତେବେଳେ ଏତେ ଖୁସି ହେଲେ ବଇଜୁର ସେଥିରେ ବେଶ୍ ସନ୍ତୋଷ ଆସିଲା ।

ପୁଣି ସଭା ହେଲା । ମୁନସି ଦାରୋଗା ଆସି ଖାତା ପେନସିଲ ଧରି ସଭା ମଝିରେ ବସିଲେ । ବଇଜୁର ଏଥର ଟିକେ ସାହସ ବଢ଼ି ଯାଇଛୁ । ଜଗ୍ଗିବାବୁଙ୍କ ପଛରେ ସେ ବି ଛିଡ଼ା ହୋଇ କହିଲା,

"ମତେ ହରିପୁର ଗାଁର କେଇ ଜଣ ପଚାରୁଥିଲେ ସ୍ୱରାଜ କହନ୍ତି କାହାକୁ । ମୁଁ ଯେତିକି ବୁଝିଛି ସେତିକି ତାଙ୍କୁ ବୁଝେଇ ଦେଇଛି । ଯାହା କହନ୍ତି, 'ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତହିଁର ଖବର ।' ମୋର କଥା ବୁଝି । ମୁଁ ତାଙ୍କୁ କହିଦେଲି, ଆମେ ଯେ ସ୍ୱରାଜ କଣ ଜାଣିବାକୁ ଆଜି ଲୋଡ଼ିଲୁଁ, ଏହା ତ ଆମର ସ୍ୱରାଜ—ଏ କଥା ତ ଆଜିଯାଏ ପଚର ଉଚର ହଜ ନ ଥିଲୁଁ, ଆଜି ହେଲୁଁ କାହିଁକି ? ନିଜକୁ ନିଜ ଦେଶକୁ ନିଜେ ଚଳାଇବା ହେଉଛି ଅସଲ ସ୍ୱରାଜ । ତାକୁ କେହି କାହାକୁ ଦେଇ ପାରେ ନ । ନିଜ ଗାଁ ବୋଲି କି ନିଜ ଦେଶ ବୋଲି ଯେତେବେଳେ ଆମେ କହୁଁ, ସେତେବେଳେ ବୁଝୁଁ ଏଥିରେ ଧନୀବଡ଼-ଲୋକ, ଗରିବଗୁରୁବା, ଖଞ୍ଜାକୁଜା, କଣାକୁଡ଼ି, ପିଲାବୁଢ଼ା, ଯେତେଲୋକ ଅଛନ୍ତି, ସବୁରି ଏ ଦେଶ, ଜଣେ କାହାରି ନୁହ । ଆମେ ସ୍ୱରାଜ ବୋଇଲେ ଧନୀ ଗରିବ, କୁଡ଼ି ନାମଜା, ସବୁରି ସୁବିଧା ବୁଝୁଁ । ଜଣେ ଦି'ଜଣଙ୍କର ନୁହ । ପୁଣି ସ୍ୱରାଜ ଗୋଟାଏ ଲେମ୍ବୁ ବାତାପି ଭଳି ଫଳ କି ଆଉ ଜିନିଷ ନୁହ ଯେ, ଆମେ ଯାଇ ତାକୁ ତୋଳି ଆଣିବା । ଗାଡ଼ିଆ ଖୋଳିବାକୁ ଯାଇ ଆମେ ଯେମିତି ଖାଲି ମାଟି ହାଣୁଁ, ମାଟି ବୋହୁଁ, ତାହାରି ସାଥିରେ ଗାଡ଼ିଆ ଖୋଳା କାମ ହେଉଯାଏ, ସ୍ୱରାଜଟା ବି ଠିକ୍ ଗାଡ଼ିଆ ଖୋଳା ଭଳି । ମାଟି ହାଣୁଁ ହାଣୁଁ ଗାଡ଼ିଆ ଯେମିତି ଖୋଳା ହୋଇଯାଏ, ସ୍ୱରାଜ ପାଇଁ କାମ କରୁଁ କରୁଁ ଏହା ଆସିଯିବ । ସ୍ୱରାଜ ବୋଇଲେ ଆଉ କିଛି ନୁହ ଭାଇ ! ସ୍ୱରାଜ ଆମେ ନିଜେ । ଆମେ ଏ ଦେଶର ସ୍ୱରାଜ, ଆମେ ଏ ଦେଶର ସବୁ । ଆମେ ଯେତେ ମାଇପି ମରଦ ପିଲା ବୁଢ଼ା ଏ ଦେଶରେ ଅଛୁଁ, ତାହାର ମାଟି ପାଣି ସବୁ ଆମର । ଭାରତର ସ୍ୱରାଜ ତାହାର ତିରିଶ କୋଟି ଲୋକଙ୍କର ସ୍ୱରାଜ ।"

ବରଞ୍ଚ ବକ୍ତୃତାରେ ଗାନ୍ଧିଙ୍କ ନାଁ ପଛେ ତୁଣ୍ଡରେ ନ ଧରୁ ପ୍ରାୟ ବାଉଟି ଥର ସ୍ୱରାଜ ଶବ୍ଦଟାକୁ ଉଚ୍ଚାରଣ କରନ୍ତି । ଏହି ଶବ୍ଦଟା ଲାଗି ଅଭିଧାନରେ କେଉଁଠି କିଛି ଆପତ୍ତି ନ ଥିଲା । ତେବେ ସରକାରୀ ଅଭିଧାନରେ ସେତେବେଳେ ସେ କଥାଟାର ମାନେ ଗୁଳି ବାରୁଦ ଭଳି ବୋଧହୁଏ ଭୟାନକ ଥିଲା । ଏମିତି ଗୋଟାଏ କଥା ତୁଣ୍ଡରେ ଧରିଲେ ଇଂରେଜ ସଜୂତି ଭିତରେ କାହାକୁ ଭଲା ଠାବ ମିଳିପାରେ ? ବରଞ୍ଚ ମିଳନ୍ତା କମିଶ !

ଅଗଣି ମିଶ୍ର ଇସ୍କୁଲ ମାଷ୍ଟର କଟକ କୋର୍ଟରୁ ତିନି ମାସର ବାକିଆ ଦରମା ଆଣିବାକୁ ଯାଇ ଦେଖି ଆସିଲେ କଟକ ସହର ଘର ଗୁଡ଼ାକ ହେଜାଣି କାହିଁକି ନିଆଁ ଲାଗି ହୁତୁହୁତୁ ଜଳି ଯାଉଛି ।

କିଏ ଲଗେଇ ଦେଲା କି କେଉଁଠୁ ନିଆଁ ଆସିଲା ସେ କଥା କେହି ପଚାରୁ ନାହିଁ । ଲୋକଙ୍କର ବେଶି ବେଳ ଯାଉଛି ନିଆଁ ନିଭେଇବାରେ କି ଆପଣା ଘର ଜଗିବାରେ । "କଣ କହିବ ସଜାବ, କଟକ ସହର ତ ଖାଲି ହାଉ ହାଉ ଜଳୁଛି । ଲୋକଙ୍କର କଣ ଘର ପୋଡ଼ିଯାଏ ନାହିଁ ! ଏ କଣ ସେମିତି ଘରପୋଡ଼ି ? ଏ ସବୁ ଆଜି ମୋ ଘରେ ଲାଗିଲାଣି ତ କାଲି ତୁମ ଘରେ । ଆଜି କଣ କଟକରେ ଏକା ଏ ତମସା ? ପୁଣି ବାଲେଶ୍ୱର ସବୁଆଡ଼େ ସବୁ ! ଏ ଦେଶ ଗୋଟା ଯାକ ଜଳୁଚି ହେ ଗୋଟାଯାକ । ଆମେ କଣ ଏଥିରୁ ଉଧୁରିଯିବା ? କେହି ଭଲ ଉଧୁରି ପାରିବ ?"

ସଜାବଲୋକଙ୍କ ବନ୍ଧୁଭକାଳ ବନ୍ଧୁବସ୍ତାମୀ ଉପରକୁ ଆଉଜି ପଡ଼ି କହିଲା, "ଏ କଥା କାହିଁକି କହୁଚ ମହାପ୍ରଭୁ । ସେ ନିଆଁ ସବୁ ଆମ ଗାଁଯାକେ ମାଡ଼ି ଆସିଲାଣି । ତାକୁ ରୋକିବ କିଏ ? ଆଉ ତ କିଏ କଣ କହୁଥିଲା, ନିଜେ ପୁଲିସବାଲା କୁଆଡ଼େ ସବୁ ନାଟର ଗୋବର୍ଦ୍ଧନ ।"

"ଆହା ହା—ସେ କଥା କହ ନି । ଯେ କାଲେ ଆମର ସେଭିତରେ କେତେ ଯାଏ ଆସେ ?"—ମାଷ୍ଟ୍ରେ ବାଧାଦେଇ କହିଲେ

"ନାହିଁ ତ ଆଜ୍ଞା ! ନିଜେ ନାଥବାବୁ ତ କହୁଥିଲେ ।"

"କହନ୍ତୁ ବାବା, ଯେ ଯାହା କହିବେ କହନ୍ତୁ । ଆମର କିଛି ନ କହିଲେ ପାଠ ଗଲା । ଆମର ଯେତିକି ଗହ୍ୱରରେ ସୁଷ ବାବା

ଯେତିକ ।" ତା'ପରେ ଭୁମା ଭୁମା କରି ମାଷ୍ଟର ଗଜାବ କାନରେ କହିଲେ, "ଆଜ୍ଞେ, ପୁଲିସବାଲା କରୁଛନ୍ତି, କିଏ ଭଲ ନ ଜାଣେ ? ତା' ବୋଲି ସେ କଥା ଖଦାରେ କହିଲେ ତମେ ଆମେ କିଏ କି ! ଶିଳ ଶିଳପରା ତ ଗଗନେ ଉଡ଼ୁଛନ୍ତି ହେ । ସେ କଥା ଭୁଣ୍ଡରେ ଧରିଲେ ଆମକୁ ଆଉ ଚାଳପାଚାଳେ ଠାବ ମିଳବନି !"

ପଦନସାହୁ ମୁଡ଼ି ବୋଝ ମୁଣ୍ଡେଇ ସେଠାରେ ଆସି ଛିଡ଼ା ହୋଇ କହେ, "କଟକ ପୁଷ୍ପ କଥା କାହିଁକି ? ଆମରି ଗାଁରେ ଏବେ ଦେଖିଲ—କାହା ଘରେ ସିନା ନିଆଁ ଲାଗି ନାହିଁ, ହରିପୁର ଗାଁ ତ ଖାଲି ପଡ଼ୁଚି ଉଠୁଚି । ନାଥବାବୁ, ଜଗୁବାବୁ, ଅର୍ଜୁନବାବୁ—କିଏ ଆଉ ବାକି ଅଛନ୍ତି କି ? ଗୋଟି କି ଗୋଟି ସମସ୍ତେ ପଗ ବନ୍ଧା ହୋଇଗଲେଣି । ସେତିକିରେ ପୁଣି ତାଙ୍କ ବେକରେ ଫୁଲମାଳ ଦେଖିବ କିଣ, ଜୟକାର ପଡ଼ୁଚି କେତେ । ଏ କଥା କଣ ଭଲ କହିଲ ? ବେହୁଆର ବଥ ଉଠିଲେ ସେ ପଗ କହେ ମତେ ଗୁଲ ହେଲା । ଯେ ଯାହା କହୁ ସବୁ କରିବାକୁ ଏଇ କଂଗ୍ରେସିଆ ।"

ଇସ୍କୁଲ ମାଷ୍ଟର କହନ୍ତି, "ହେଲା ପଛେ, ବାବୁଭୟାଙ୍କର ସେ କାମ ଯେ ସେମାନେ ଲାଗିପଡ଼ିଛନ୍ତି, କିଏ ଶହେ ପାଇବ ତ ଆଉ କିଏ ଦୁଇଶ ପାଇବେ, ଆମେ କେତେକର ମୁଣ୍ଡ ଯେ ତାଙ୍କ ସାଥିରେ ସରସା ହୋଇ ଡେଇଁବା ? ହେଇ ଦେଖିଲ, ଶେଣଘରକୁ ଯଉଁ ବନ୍ଧୁ ଜଣକ ଆସିଛନ୍ତି । କରେ ବାବୁ, ଚୋର ପିଲ ଭଉଜା ଖକତ ଫସାର । ତହିଁରେ ପୁଣି ଚୁଲି ଗୁଲ ନାହିଁ ଅଘର ବାସ । ତମର ଏତେ ସଦ୍ଭ ସମିତିରେ ଭଲ ଭାଷଣ ଘୋଷାଏ କିଣ ?"

ପଦନ ସାହୁ ବୋଝଟାକୁ ତଳେ ଥୋଇଦିଏ—"କହ ନାହିଁ ଆପଣେ, ସେ କଥା । ଡେଇଁ ଶୋଇବ ଯେ ତାକୁ ଉଠେଇବ କିଏ

କହୁଛ ? ବୁଝେଇ ବୁଝେଇ ତ ସମସ୍ତେ ଥକିଲେ । କେତେ ପିଲା ଛୁଆ କି ଝୋଳାଝାଳିଆ ହୁଅ । ଯେ ନ ବୁଝିବ ତାକୁ ଆଉ ବଳ କାହାର ? ଶେଷରେ ଗଜବ ବଢ଼ବ ସିନା ଦଇଗଣ । ପ୍ରୀତିବନ୍ଧୁ ବୋଲି ସେ ତ କିଛୁ ତମ ପିଲାଛୁଆଙ୍କୁ ପୋଷିବାକୁ ଲେଖିପଡ଼ି ଦେଇ ନା । ନାଥବାବୁ ଜପିବାବୁ ଭଳି ଲୋକ ତ ଧର ଯେଉ-ଗଲେଣି । ତମକୁ କଣ ସରକାର ତଣ୍ଡିକଟା ଗୁଡ଼ ଦବ କି ।”

“କାଇଁକି ଗୁଡ଼ଦେବ କି ହେ ? ତମପରି କାହାଣେ ଭଲ ଜଅଲ ଫାଟକରେ ପଶିଲେ ତାର କାହିଁକେ କଣ ବଙ୍କା ହେଇଯିବ ?”—ଇସ୍କୁଲ ମାଷ୍ଟର କହିଲେ ।

ସରକାର ବଙ୍କା ହେବ କି ନାହିଁ ବରଜୁ ତାହା ବସ୍ତୁତ ନ ଥିଲା । ତେବେ ସବୁ ଲୋକ ଯେବେ ଜେଲରେ ପଶିବାକୁ ତିଆର ହେବେ ଯେତେବେଳେ ସରକାର ହେଉ ପଛକେ ଠିକ ପଡ଼ିବ ବୋଲି ତା’ର ବିଶ୍ୱାସ । ପୁଣି ବିଶ୍ୱାସ ଥିଲା, ସେ ଯେଉଁ କାମ କରିବାକୁ ଯାଉଛି ତାହା ସତ ପାଇଁ, ନ୍ୟାୟ ପାଇଁ ଧର୍ମ ପାଇଁ । ସେଥିରେ ତା’ର ଯାହା ହେଉ, ତହିଁକି ପରୁଆ କଣ ? ସେ ଯେବେ ସତରେ ଥିବ ତା’ ପିଲାଛୁଆ ଉପାସ ରହିବେ କାହିଁକି ?”

ରଣାବ ଲେଙ୍କା ଉତ୍ତରେ, “ଆଚ୍ଛା ଏମାନେ କାହାର ଭଲ କି ଦୋଷ କରୁଛନ୍ତି ଯେ ସରକାର ତାଙ୍କୁ ଏତେ ଦଣ୍ଡ ଦଉଛି ? ଓଲଟି ସେମାନେ ସବୁରି ଉପକାର ପାଇଁ ତ ଧାଇଁଛନ୍ତି । କେଡ଼େ ଭଲ ମଣିଷ ଏଇ ଜପିବାବୁ, ନାଥବାବୁ ।”

“ଆହେ, ଭଲ ମଣିଷ ବୋଲି ସରକାର କଣ ତାଙ୍କୁ ମୁଣ୍ଡେଇ ଧରିବ ? କାହାର ପ୍ରକୃତି ଜାଣ ଠିକ ? ପଞ୍ଚମ ଜର୍ଜ ସମ୍ରାଟ ଆମ୍ଭ

ମହାରାଜା । ଅତି ସୁଖେ ଚରବଦନ ପାଳନ୍ତି ପରଜା ।" ପିଲାଙ୍କ ପାଠ୍ୟପୁସ୍ତକରୁ ପଦେ ବୋଲାଇଦେଇ ମାଷ୍ଟର କହିଲେ, "ପଞ୍ଚମ ଜର୍ଜ କିଏ ଜାଣ ? ଭିକ୍ଟୋରିଆ ମହାରାଣୀଙ୍କ ନିଜ ନାତି । ମଧୁବାବୁ ପରା ତାଙ୍କ ସାହିତ୍ୟକୁସୁମରେ ଲେଖିଛନ୍ତି—"

ସ୍କୁଲ ଭିତରକୁ ଚାହିଁଦେଇ ମାଷ୍ଟର ଡାକନ୍ତି, "କିରେ ପିଲାଏ । ପିଠି ପୁଣି ଚଳୁ କଲଣି ପରା ! ମାଡ଼ ମନଇଛ ନା ?"

ପିଲାଗୁଡ଼ାକ ପାଟି କରି ପାଠ ଘୋଷନ୍ତି, "କ—ଆକାର କା, ହ୍ରସ୍ୱ ଇକାର କି"—ଇତ୍ୟାଦି ।

ପଠନ ସାହୁ ମୁଡ଼ି ବୋଝ ମୁଣ୍ଡରେ ଦାଣ୍ଡମଝିରେ ଡାକ ଡାକ ଚାଲିଯାଏ ।

ବନ୍ଧୁ ବସ୍ତାମାଠାକୁ ଆଜି ଟିକିଏ ଟାଣି କରି ବାନ୍ଧି ଗଜାବ ଲେଙ୍କା ପିଠିରେ ପକାଏ । ଅଣ୍ଟା ପାଖରୁ ସମକୋଣ ଭାବରେ ଭାଙ୍ଗି ହୋଇ ବାଟ ଯାକ ଗୀତ ବୋଲି ସେ ନଇଁ ନଇଁ ଚାଲେ । ଲୋକେ କହନ୍ତି, ପିଠିରେ ଆଗରୁ କେତେ ବୋଝ ବହି ହୋଇ ଗଜାବର ଅଣ୍ଟା ସାଗି ହୋଇ ଯାଇଥିଲା । ବୟସ ପଚାରିଲେ କହେ, ତିନି କୋଡ଼ି ଷୋହଳ । ତେବେ ଦାନ୍ତଗୁଡ଼ିକ ଲୁହା ଭଳି ଟାଣ । ସ୍ୱର ବି ଏମିତି ଟାଣ ଆଜି ମିଠା ଯେ ଗୀତ ବୋଲିଲେ ଦୂରରୁ ଶୁଣିବା ଲୋକ କହିବ ଜଣେ ପଚିଶ ବର୍ଷର ଭେଣ୍ଡିଆ । ନୂଆ ବନ୍ଧ ଧରି ପୋଢ଼ ଗୀତ ବୋଲି ବୋଲି ସେ ଦାଣ୍ଡରେ ଚାଲିଥାଏ ।

ଭେଟ ହୋଇଗଲା ବରଜୁ ପ୍ରଧାନ ସଙ୍ଗେ । ଗଜାବଲେଙ୍କାକୁ ବରଜୁ ଖାଲି ସୁଖ ପାଏ ନାହିଁ, ଗୁରୁ ଭଳି ତାକୁ ଭକ୍ତି କରେ । ବେଶି କରି ତିନି କୋଡ଼ି ଷୋହଳ ବର୍ଷରେ ସେ ଯେମିତି ବସ୍ତା ବୋଝ ପିଠିରେ ଥୋଇ ଗୀତ ବୋଲେ ସେଇଥି ପାଇଁ । ବରଜୁର

ଅବଧୂତ ଜୀବନରେ କେତେ ଗୁରୁ ସେ କରିଛନ୍ତି । କେତେ ଲୋକଙ୍କଠାରୁ କେତେ କଥା ଶିଖିଛି । ଗଜାବଲୋକଙ୍କୁ ଦେଖି ସବୁରି ପାଇଁ ତାହାର ଭକ୍ତି ମମତା ବଢ଼ିଯାଏ ।

ଗଙ୍ଗାଧର ଗୀତ ମନ୍ଦିରେ ବରଜୁ କହିଲେ, "ଦଣ୍ଡବତ ମଉସା ।"

ଦୁଇ ଥର ଦଣ୍ଡବତ ହୋଇ ସାରି ଗଙ୍ଗାଧର ବନ୍ଧ ଉପରୁ ମୁହଁ ଟେକ ବରଜୁ ମୁହଁକୁ ଚାହିଁଲେ, "କଣ ଆଜ ଏଡ଼େ ବେଗା ବେଗି ବାହାରି ପଡ଼ୁଛ ?"

"ଡାକ ଘରକୁ ଯାଉଚି ମଉସା । ଖବରକାଗଜ ପଢ଼ିବାକୁ ।"

ସେଇଜନା ଖବର କାଗଜ ପଢ଼ିବା ବରଜୁର ନିଶା ହୋଇ ଗଲାଣି । ଖବର କାଗଜ ପଢ଼ି ବାବୁମାନଙ୍କ ସାଙ୍ଗେ ଚର୍ଚ୍ଚା କରିବା, ସୂତା କାଟି ଖଦଡ଼ ଲୁଗା ପିନ୍ଧିବା, ଧଳବାରି କମେଇବା ସାଙ୍ଗକୁ ଏହା ତାର ଗୋଟାଏ ଅଧିକା କାମ ହୋଇ ପଡ଼ୁଚି । ସେଥି ପାଇଁ ତାର ଘର କାମରେ ହେଳା ହୁଏ ନାହିଁ । ଖସବେଳଣା ନଇଲେ ସଞ୍ଜ ହେଲେ ବିଲରୁ ଫେରି ଯେତେକ ଫୁରସତ୍ ମିଳେ ସେତକ ସେ ଏଇ କାମରେ ଲଗାଏ । ଘଣ୍ଟା କଣ୍ଟା ଭଳି ସକାଳୁ ସଞ୍ଜଯାକେ ଯେତେବେଳେ ଯାହା କରିବା କଥା କାହିଁରେ ହେଳା ହୁଏ ନାହିଁ ।

ସବୁ ଦିନ ପରି ଆଜି ବି ବଇଜୁ ସତ କଣେ ନ ପାହୁଣୁ ଶେଯରୁ ଉଠି ସବୁ କାମ ଦାମ ସାରିଛି । ଦାମ, ମୋଟ ଦାନ୍ତ ଘଷି ଚୁଡ଼ାଭଜା ମୁଠାଏ ନେଇଁ ଅଣ୍ଟିରେ ପୁଟୁଳି ବାହାରିଲେଣି । ହାରବୋଉ କେତେ ଆଗରୁ ଦାଣ୍ଡ ପିଣ୍ଡା ଘର ଦୁଆର ଲିପାପୋଛା କରି ସାରିଛି । ଗଉର ଆସି ଥର ଥର ଗଳାରେ ଖବର ଦେଲା, ଦାରୋଗା ବାବୁ ଦି' ଜଣ ସିପେଇଙ୍କୁ ଧରି ଦାଣ୍ଡ ଦୁଆରେ ବଇଜୁକୁ ଡାକୁଛନ୍ତି । ହାରବୋଉର ହାତଧୁଆ ଅଟକିଗଲା । ଦାମ ମୋଟ ପାଟିରେ ଚୂଡ଼ାଭଜା ଜାକି ଆଉ ଚୋବେଇ ପାରିଲେ ନାହିଁ । ଗୌରଙ୍ଗ ଶେଣର ଦାଣ୍ଡ ଦୁଆରେ ଘର ଭିତରେ କେତେ ଲୋକ ଜମା ହୋଇଗଲେ । କେତେ ଲୋକ କେତେ କଥା ଚୁପୁଚାପୁ ହେଲେ । ପୁଲିସ ଆଗରେ ଆଉ କଣ ବଡ଼ ପାଟିରେ କଥା କହନ୍ତେ ?

ବଇଜୁ ପଧାନ ସବୁ କଥା ବୁଝି ସାରିଥିଲା । ଅତି ସହଜରେ ହସି ହସି ଗୌରଙ୍ଗଙ୍କୁ କହିଲା, "ତୋ ପାଟି କାହିଁକି ଖନ ମାରି ଯାଉଛି କି ରେ ? ପୁଲିସ ଆସିଛି ତ ହେଲା କଣ ? ଗିରଫ କରି ନବ ? କଣ ହେଲା କି ହାରବୋଉ ? ଏମିତି କାହିଁକି ଝୁରିତ ? ଗୌର ତମକୁ ମାସ କେଇଟା ଚଳେଇ ପାରିବ ନି ବୋଲି ଡରୁଛ ପରା ? ନାହିଁ ମ, କିଛି ଅସୁବିଧା ହେବ ନି । ଗୌର କାହିଁ ଗଲା ?"

ହାରବୋଉକୁ ସେ କେତେ ଥର ଆଗରୁ ଜେଲ ଯିବା କଥା, ଦେଶରେ ନିଜ ସରକାର ହେବା କଥା ବୁଝାଇଥିଲେ ବି ସେ ବିଶ୍ୱାସ ମନ ଦେଇ ତା' କଥା ଶୁଣି ନାହିଁ କି ବୁଝି ପାରି ନାହିଁ । ଆଜି ବୁଝିଲା, ଦାଣ୍ଡ ଦୁଆରକୁ ପୁଲିସ ଆସିଛି, ବଇଜୁକୁ ଧରି ନେବା ପାଇଁ ।

କୁଆଡ଼ୁ କିମିତି ଖଣ୍ଡେ କନିଅର ଫୁଲମାଳ ଆଉ ଟିକିଏ ଚନ୍ଦନ ଯୋଗାଡ଼ କରି ଗୌରୀ ଫେରିଲା । ବରଜୁର ଦ'ହାତରେ ସେତେବେଳେ ଜଣେ ସିପେଇ ଗୋଟାଏ ହାତକଡ଼ି ପିନ୍ଧାଉଚି । ଯେତେ ଲୋକ ରୁଣ୍ଡ ହୋଇଥିଲେ ସବୁରି ଆଖିରେ ଡର । ମୁହଁକୁ ଯେମିତି ରକ୍ତ ଶୁଖି ଯାଉଛି । ଆଜଠଁ ଯେମିତି ଗାଁ ଯାକର କଥା ଏକାବେଳେ ବନ୍ଦ ହୋଇଗଲା । ଏତିକିବେଳେ ଗୌରଙ୍ଗ ଶେଣ ଘରଭିତରୁ ବାହାରିପଡ଼ି ଲୋକଙ୍କୁ ଦୁଆର ମୁହଁରୁ ଆଡ଼େଇ ଦେଲା । ତା'ପଛରେ ହାତେ ଲମ୍ବ ଓଢ଼ଣା ଟାଣି କିଏ ଜଣେ ମାଇପିଟିଏ ବରଜୁ ପାଖକୁ ଚାଲିଚାଲି ଆସିଲା । ପଡ଼ିଶାଲୋକେ ଚିହ୍ନିଲେ ସେ ହାଡ଼ିବୋହୂ । ଗୌରଙ୍ଗ ହାଡ଼ିବୋହୂ ହାତରେ ବରଜୁ କପାଳରେ ଚନ୍ଦନ ଟୋପାଟିଏ ଦିଆଇ ଆପେ ତା' ବେକରେ କନିଅର ଫୁଲମାଳଟି ପକାଇ ଡାକିଲା, "ଭାରତ ମାତାର ଜୟ ।"

ନାଥବାବୁ ଇସୁବାବୁ ଗିରଫ ହୋଇ ଗଲାବେଳେ ଗୌରୀ ଯାହା ଦେଖିଥିଲା, ବରଜୁ ବେଳକୁ ସେତିକି ଯୋଗାଡ଼ କରିଥିଲା । ହେଲେ ସରକାରୀ ପୁଲିସ ଆଗରେ ସେ କଣ କମ ସାହସ କଲା !

ଗୌରୀ କଥାରେ ଆଜି ଜଣେ ହେଲେ କେହି ଯୋଗ ଦେଲେ ନାହିଁ । ବରଜୁ ହାତକଡ଼ି ପିନ୍ଧି ଦୁଇ ପାଖେ ପୁଲିସ ଜଗୁଆଳଙ୍କ ମଝିରେ ଦାଣ୍ଡେ ଦାଣ୍ଡେ ଚାଲିଲା । ଓଢ଼ଣା ତଳୁ ପଛରୁ ଚାହିଁ ଦେଇ ହାଡ଼ିବୋହୂ ଘର ଭିତରେ କବାଟ କିଳି ଲୁହ ଢାଳିଲା ।

କଚେରୀ କାଠଗଡ଼ା ଭିତରେ ଠିଆ ହୋଇ ବରଜୁ ପ୍ରଧାନ କହିଲା, "ତାହାର କିଛି ହେଲେ ଜବାବ ଦବାକୁ ନାହିଁ । ଏହି ବିଚାରରେ ତାହାର ବିଶ୍ୱାସ ନାହିଁ ।" ସେଥିପାଇଁ ତାକୁ ଦଣ୍ଡ ମିଳିଲା,

ଛଅଟି ମାସ ଜେଲଭିତରେ ଦିନକୁ ଅଧସେର ସୋରିଷ ତେଲ ବାହାର କରିବ ଆଜି ଦେଢ଼ ସେର ଛଟାର ଦଉଡ଼ି ବଳିବ ।

ଏହି ଭାବରେ ପୃଥିବୀମାତାର କେଉଁ କଣରେ ବିରୁପାକୂଳ ପଧାନପଡ଼ାର ସବୁଠାରୁ ଅତି ନଗଣ୍ୟ ଅତି ସାନ ମଣିଷଟିଏ ଜୀବନର ଯୋଡ଼ିଏ ଅଧ୍ୟାୟ ଶେଷ କରି ଆଜି ଗୋଟିକରେ ପହଞ୍ଚିଲା, ମାଟିର ବାଡ଼ ଭାଙ୍ଗି ପଶିଲା ଲୁହାବାଡ଼ ଭିତରେ । ହାତରେ ଗୋଡ଼ରେ ଲୁହା ଶିକୁଳି ପିନ୍ଧିଲା । ଗ୍ରୀବରେ ତାହାର ଲୁହା କଣ୍ଠା କାଟିଲା ନାହିଁ । ବାହା ଦୁଇଟା ଲୁହାବାଡ଼ଠାରୁ ଟାଣ ହେଲା । ଆଙ୍ଗୁଠି ଯେମନ୍ତ ଇସ୍ପାତର ଛୁରୀ, ଆଉ ଆଖି ଯୋଡ଼ାକ ଜଳିଲା ଯେମିତି ତାତିଲା ଲୁହା । ଦୁନିଆ ଉପରେ ଉଇଁ ଉଠିଲା ଲୁହାର ମଣିଷ ।

